ପୁରାତନ କବି ବିପ୍ର ଦିବାକର ଦାସଙ୍କ ବିରଚିତ

# ଜଗନ୍ନାଥାମୃତ ଗୀତା

ବା

# ଶ୍ରୀ ଜଗନ୍ନାଥ ଚରିତାମୃତ ।

---

ପଣ୍ଡିତ ଶ୍ରୀ ଜନାର୍ଦ୍ଦନ କରଙ୍କ ଦ୍ୱାରା ସଂଶୋଧିତ ।

ଶ୍ରୀ ମାଧବଚନ୍ଦ୍ର ଦାସ ଓଟେରଙ୍କ ଦ୍ୱାରା

ପ୍ରଥମବାର ପ୍ରକାଶିତ ।

---

କଟକ, ଅରୁଣୋଦୟ ଯନ୍ତ୍ରାଳୟରେ ମୁଦ୍ରିତ ।



PRINTED BY NITYANANDA SAMOO

at the Arunodaya Press

CUTTACK

1927

ମୂଲ୍ୟ ଟ [illegible] ୴ ଚାରିଅଣା ।

# ଜଗନ୍ନାଥାମୃତ ଗୀତା ।

## ପ୍ରଥମ ଅଧ୍ୟାୟ ।

ଶ୍ଳୋକଃ ।

ସର୍ବସିଦ୍ଧିମୟୋ ଜ୍ଞାନଭକ୍ତିମୁକ୍ତି ଯଥୋଚିତଃ ।
ବଦତ ସର୍ବସିଦ୍ଧିଂ ସ୍ୟାତ୍ତସ୍ମୈ ଶ୍ରୀଗୁରୁବେ ନମଃ ॥

ଆଦ୍ୟେ ଗୁରୁଙ୍କୁ ନମସ୍କାର । କରୁଛି ବିପ୍ର ଦିବାକର ॥
ଘୋର ଅନ୍ଧକାରୁ ତାରିଲେ । ଭକ୍ତି ପ୍ରଦୀପ ଦେଖାଇଲେ ॥
ସମସ୍ତ ବୈଷ୍ଣବ ଚରଣ । ବିପ୍ର ଦିବାକର ଶରଣ ॥
ଅଧମପଣ ମୋର ଥିଲା । ଗୁରୁଙ୍କ ବାକ୍ୟେ ନାଶ ଗଲା ॥
କିଛି ସଂଶୟ ଯେ ଅଛଇ । ତୁମ୍ଭ ଆଜ୍ଞାରୁ ଯିବ ସେହି ॥
ଭକ୍ତିର ପଥ ଦେଖାଇବ । ସଙ୍ଗେ ସଙ୍ଗତ କରି ନେବ ॥

ଶ୍ଳୋକଃ ।

ଲକ୍ଷ୍ମୀଂ ସରସ୍ୱତୀଂ ଚୈବ ସ୍ୱର୍ଗାଂଶ୍ଚ ଚ ଗଜାନନଂ ।
ବ୍ରହ୍ମ ଶ୍ରୀବିଷ୍ଣୁ ରୁଦ୍ରାଂଶ୍ଚ ବିପ୍ର ଦିବାକରେ ଭଜେତ୍ ॥

ଗ୍ରନ୍ଥର ଅବିଘ୍ନ କାରଣେ । ସେବଇଁ ତୁମ୍ଭର ଚରଣେ ॥
କରଛ ଅଶେଷ ସଂସାର । ଅଶେଷ ଗ୍ରନ୍ଥରି ଗୋଚର ॥
ମୋର ଆରମ୍ଭ ଯେ ଗ୍ରନ୍ଥନ । ସ୍ୱେ ଦେବ କରିବା ଅବିଘ୍ନ ॥
ଅବିଘ୍ନେ ପୂର୍ଣ୍ଣ ଗ୍ରନ୍ଥ କର । ଶରଣ ବିପ୍ର ଦିବାକର ॥
ଅଶୁଦ୍ଧ ଯେବେ ଗ୍ରନ୍ଥ ହୋଇ । ସାଧୁ ନିନ୍ଦନ୍ତି କେବେ ନାହିଁ ॥
ତାହାର ଗୁଣକୁ ଘେନନ୍ତି । ଅଶୁଦ୍ଧ ଦୂରେ ପ୍ରତେଜନ୍ତି ॥
ଅତ୍ୟନ୍ତ ଶୁଦ୍ଧ ହୋଇଥାଇ । ଖଳତା ଅବଧା ନିନ୍ଦଇ ॥

ଶ୍ଳୋକଃ ।

ନିନ୍ଦକା ଶୂକରଶ୍ଚୈବ ସଫଳୋ ନିର୍ମିତୋ ହରିଃ ।
ନିନ୍ଦକା ସାଧୁଂ ଶୁଦ୍ଧ୍ୟନ୍ତି ଗ୍ରାମଂ ଶୁଦ୍ଧ୍ୟନ୍ତି ଶୂକରାଃ ॥

ନିନ୍ଦା ସମାନ ଲୋକ ହୋଇ । ବ୍ରହ୍ମାଣ୍ଡେ ପାପୀ ଅଛି ନାହିଁ ॥
ପାପୀ ଅଧମ ନ ଜାଣନ୍ତି । ଉତ୍ତମ ଗ୍ରନ୍ଥକୁ ନିନ୍ଦନ୍ତି ॥
ସେ ଯେବେ ନିନ୍ଦା ନ କରିବ । ରୌରବ କୁଣ୍ଡ ସେ ହୋଇବ ॥
ଏବେ ଅତିବଡ଼ ଗୋସାଇଁ । ତାହାଙ୍କୁ ଦଣ୍ଡବତ ହୋଇ ॥
ତାଙ୍କର ଷୋଳଶିଷ୍ୟ ଯେହୁ । ତାହାଙ୍କୁ ଦଣ୍ଡବତ ହୋଇ ॥
ଶ୍ରୀ ଅତିବଡ଼ ଯେ ଗୋସାଇଁ । ଷୋଳ ଶିଷ୍ୟଙ୍କ ନାମ ଏହି ॥

ଶ୍ଳୋକଃ ।

ଲକ୍ଷବୋ ରାମଚନ୍ଦ୍ରଶ୍ଚ ଗୋପୀନାଥଶ୍ଚ ଶ୍ରୀହରିଃ ।
ବାମନୋ ନନ୍ଦନୋ ଗୌରୋ ଗୋପାଳଶ୍ଚନ୍ଦ୍ରନସ୍ତଥା ॥
ଜନାର୍ଦ୍ଦନପତିଃ କୃଷ୍ଣଦାସଶ୍ଚ ବନମାଳୀ ଚ ।
ଗୋବର୍ଦ୍ଧନସ୍ତଥା କାହ୍ନୁଖୁଣ୍ଟିଆ କୃଷ୍ଣକର୍ମା ବଦେତ୍ ॥
ପୁନଃ ଶିଷ୍ୟା ଜଗନ୍ନାଥଦାସସ୍ୟ ମୃତବାନଥ ।
ଇତି ଷୋଡ଼ଶ ଶିଷ୍ୟାସ୍ତେ କଳଧନ୍ୟା ନମାମ୍ୟହଂ ॥

ହରି ରାମାଦି ଯେ କୀର୍ତ୍ତନ । ସଖୀ ଭାବରେ ସେ ଭଜନ ॥
ଶ୍ରୀ ଅତିବଡ଼ ଯେ ଗୋସାଇଁ । ରାଧାଙ୍କ ଅଂଶେ ଜାତ ସେହି ॥
ତାଙ୍କର ଯେବା ଷୋଳଶିଷ୍ୟ । ସେ ଷୋଳ ସଖୀଙ୍କର ଅଂଶ ॥
ନିଜ ପ୍ରଭୁଙ୍କ ସେବା ରଙ୍ଗେ । ନିତ୍ୟ ଛାଡ଼ି ଜନ୍ମିଲେ ସଙ୍ଗେ ॥
ଚୌଷଠି କୋଟି ସଖୀମାନ । ନିତ୍ୟ ସେବାରେ ସେ ପ୍ରଧାନ ॥
ଲୀଳା କରିବା ନିମିତ୍ତରେ । ଆସି ମିଳିଲେ ମର୍ତ୍ତ୍ୟପୁରେ ॥
ରାମାଦି ସ୍ନେହ ଯେ କରଇ । ଜାଣିବ ନିତ୍ୟ ସଖୀ ସେହି ॥
ପୁରୁଷୋତ୍ତମ ସ୍ଥାକୁ କହି । ନିତ୍ୟ ଏ ଭିନ୍ନାଭିନ୍ନ ନୋହି ॥
ଏଥକୁ ପ୍ରତି ଲକ୍ଷ୍ୟମାନ । କହିବା ଶୁଣ ସାଧୁଜନ ॥

ସଙ୍କେତରେ କହୁ ଯୁଷ୍ମନ୍ତ । ଜାଣିବ ଦ୍ୱାରକା ବୈଷ୍ଣବ ॥
ଯାହାର ଚକ୍ଷୁ ନ ଚଳଇ । ଜାଣିବ ଦେବଗଣ ସେହି ॥
ଯେମନ୍ତ ନ ଜାଣଇ ବୈଦ୍ୟ । ମୃତ୍ୟୁ ସଞ୍ଜିବନୀ ଔଷଧ ॥
ଯେମନ୍ତ ନ ଜାଣଇ ନର । ମରିବାକୁ ହେବାକୁ ପାର ॥
ଯାବତ ସ୍ତ୍ରିଶ୍ର ଅଙ୍ଗ ନୋହି । ସ୍ୱମାଧ ଭାବ ନ ଜାଣଇ ॥
କେବଳ ସ୍ୱମାଧ ବାହାରେ । ପ୍ରେମ ନ ଲଭନ୍ତି ଭକ୍ତିରେ ॥
ଏବେ ଗୁରୁ ପ୍ରଣାଳୀ ମୁହିଁ । ଗ୍ରନ୍ଥରେ ଲେଖୁଣ ଅଛଇ ॥

ଶ୍ଳୋକଃ ।

ଅଦୌ ବ୍ରଜ ଦବାକସେ ତଦ୍‌ଗୁରୁ ନସୀନକେଶରଃ ।
ତଦ ପରମଦସ୍ୟାତ୍ତୁ ସ୍ତବୈବ କୋଳ କୃଷ୍ଣକଃ ॥
ଦ୍ରଷ୍ଟସ୍ୟଂ ବନମାଳୀ ଚ ଅତବତ୍ ଜଗନ୍ନାଥଦାସଃ ।
ଶ୍ରୀମାନ୍ ବଳସ୍ୱମସ୍ତ ହୃଦସ୍ୟାନନ୍ଦକ ସ୍ତତଃ ॥
ଗୌଶିଦାସ ପଣ୍ଡିତଷ୍ଟ ଚୈତନ୍ୟଷ୍ଟ ମହାପ୍ରଭୁଃ ।
ଅଦତି ମାଧବାଶ୍ଚର୍ଯ୍ୟା ନୃହରଷ୍ଟ ଭବାନ ହି ॥
ପଦ୍ମନାଭ ଷ୍ଟାସ୍ୟାଂଶକୋ ମାଧବାଂଶକଏବ ଚ ।
ବ୍ୟାସନାରଦୌ ବ୍ରହ୍ମା ଚ ନାସ୍ୟଣଃ ସବକ୍ଷୁନା ।
ପରଂବ୍ରହ୍ମ ସ୍ୱୟଂ ନାମ ପ୍ରସଟହେନ ପ୍ରକାଶିତଂ ॥

ପ୍ରଣାଳୀ ମଧ୍ୟେ ଯେତେ ଗୁରୁ । ଶୁଣିଛ ସାଧୁଙ୍କ ମୁଖରୁ ॥
ସମସ୍ତ ବୈଷ୍ଣବ ପୂଜବ । ଆପଣା ପୂଜ ନ ଛାଡ଼ବ ॥
ପରର ପୂଜ ଯେ ଭଜଇ । କୁଳ ବୁଡ଼ା ତାହାକୁ କହି ॥
ଯେମନ୍ତ ବହପୀ ଯୁବତୀ । ସ୍ୱାମୀକୁ ଛାଡ଼ ଅନ୍ୟେ ପ୍ରୀତି ॥

ବସ୍ତୁ ପୁସଣେ—

ଗୁରୁଃ ପୂଜ ମିମୈବାଞ୍ଚ ଯସ୍ତୁ ମୂଢ଼ଷ୍ଟ ଲଂଘତେ ।
ଅଜ୍ଞାଛେଦା ମମଦ୍ୱେଷୀ ମଦ୍ଭକ୍ତୋଽପି ନ ବୈଷ୍ଣବଃ ॥

ନାରଦେ କହେ ଭଗବାନ । ବେଦ ପୁରାଣ ମୋ ବଚନ ॥
ଯେବଣ ମୂଢ଼େ ତା ତେଜନ୍ତି । ଅନ୍ୟ ମାର୍ଗେ ମୋତେ ଭଜନ୍ତି ॥
ବୁଦ୍ଧି ସିଦ୍ଧି ସାଧନେ ଯାନ୍ତି । ତେବେହେଁ ଭକ୍ତି ନ ଲଭନ୍ତି ॥
ଯେଣୁ ମୋର ଆଜ୍ଞା ଭଜନ୍ତି । ତେଣୁ ମୋର ଶତ୍ରୁ ଅଟନ୍ତି ॥
ଯେତେ ସାଧନ କଲେ ସେହି । ମୋତେ ଲଭିବେ ଅବା କାହିଁ ॥

ଭଗବଦ୍ଗୀତାସ୍ଥଂ—

ବେଦ ଯାହାକୁ ବୋଲିଅଛି ଯାହା ।
ପାର ହୋଇବ ସେ କରଣ ତାହା ॥
ବ୍ରାହ୍ମଣ କର୍ମକୁ ଶୂଦ୍ର କରବ ।
ଭଲ ନୁହଇ ଅକାର୍ଯ୍ୟେ ମରବ ॥
ନିଜ ଜାତିରେ କର୍ମ କରୁ କରୁ ।
ମନ୍ଦ ହୋଇଲେହେଁ ଲୋକେ ନ ଡରୁ ॥

ଯେ ଯାହା ଧର୍ମ ଆଚରବ । ଲାଭ ହେଲେ ପରେ ନ ଯିବ ॥
ଶ୍ରୀ ଅଚ୍ୟୁତ ବନ୍ଧୁ ଯେ ଗୋସାଇଁ । ତାଙ୍କ ଚରିତ କେବା କହି ॥
ଶ୍ରୀରାଧାଙ୍କ ଦାସ ଲଳିତ । ତହିଁରୁ ହୋଇଛନ୍ତି ଜାତ ॥
ଶ୍ରୀ ବଇକୁଣ୍ଠ ନିତ୍ୟସ୍ଥାନ । ଶ୍ରୀ ରାଧା କୃଷ୍ଣ ଏକାସନ ॥
ଅଛନ୍ତି ଏକ ଭାବ ହୋଇ । ମନ ଚଞ୍ଚଳ କେବେ ନୋହି ॥
ରସ ଆନନ୍ଦ ସୁଖେ ଥିଲେ । ସ୍ନେହରେ ମୁଖକୁ ଚାହିଁଲେ ॥
ଅମୃତ ପ୍ରାପ୍ତେ ରାଧା ମୁଖ । ଦେଖି ପାଇଲେ କୃଷ୍ଣ ସୁଖ ॥
ସେ ହାସ୍ୟ ମଧୁର ଅମୃତ । ତହୁଁ ଚୈତନ୍ୟ ହେଲେ ଜାତ ॥
ଏକତ୍ୱ ଭାବେ ଯେଣୁ ଦୁଇ । ରାଧା ବହିଲେ କୃଷ୍ଣେ ଚାହିଁ ॥
ସେ ହାସ୍ୟୁଁ ଜନ୍ମିଲେ ଭୁରତ । ଯେ ଅଚ୍ୟୁତ ବନ୍ଧୁ ଜଗନ୍ନାଥ ॥
ବୋଇଲେ ଶ୍ରୀ ନିତ୍ୟ ଈଶ୍ୱର । ତୁହେଁ ଜନ୍ମିବା ମର୍ତ୍ତ୍ୟପୁର ॥
ଶ୍ରୀ ଚଇତନ୍ୟ ମୁଖ ଚାହିଁ । ଦ୍ୱାଦଶ ସଖୀ ସଙ୍ଗେ ନେଇ ॥
ଜନ୍ମ ହୋ ନଦୀଆ ନଗର । ହରି ନାମ କୀର୍ତ୍ତନ କର ॥

ଶ୍ଳୋକଃ—

ସର୍ବେ କଳମଳା ଯୁକ୍ତା ଲୋକା ପାପିମ୍ନତ ତୁ ପରା ।
ମହାପାତକ ସଂଯୁକ୍ତା ବେଦଦ୍ୱିଜବିନନ୍ଦକାଃ ॥
କଳୌ ପାପରତା ଲୋକା ସ୍ୱାଧ୍ୟାୟ ବିଧିବର୍ଜିତାଃ ।
ଶୂଦ୍ରବୃତାଃ ଦ୍ୱିଜାଃ ଶୂଦ୍ରା ବ୍ରାହ୍ମଣଦ୍ୱେଷକାରଣାଃ ॥
ସ୍ୱଶ୍ରୀଧଶ୍ଚାରମାସ୍ଥାପ୍ୟ ନବଦ୍ୱୀପେ ଯତାଳୟେ ।
ସନ୍ନ୍ୟାସ ରୂପ ମାଶ୍ରିତ୍ୟ ଶ୍ରୀ ଚୈତନ୍ୟ ନାମଧୃକ୍ ॥

ପୁଣ ରାଧାଙ୍କ ଅଂଶ ଗୃହିଁ । ବୋଇଲେ ଜନ୍ମ ହୁଅ ମସ୍ତ ॥
ଶ୍ରୀମନ୍ତ ରାଜ ହର ନାମ । ସଂସାରେ କରାଅ କୀର୍ତ୍ତନ ॥
ଆଜ୍ଞା ପ୍ରମାଣେ ସେ ଅଇଲେ । ଓଡ଼ଶା ରାଜ୍ୟେ ଜନ୍ମ ହେଲେ ॥
ନାମ କପିଳେଶ୍ୱର ପୁର । ଶାସନ ମଧ୍ୟେ ତାଙ୍କ ଘର ॥
ପୁରାଣ ପଣ୍ଡା ଭଗବାନ । ପଦ୍ମା ବୋଲିଣ ପତ୍ନୀ ନାମ ॥
ଜନମ ନୋହେ ଯେବେ ମସ୍ତ । ତେବେ ଯେ ଭକ୍ତି ହୋଏ ନାହିଁ ॥
ତେଣୁ ସେ ପଦ୍ମାର ଉଦରେ । ଜନ୍ମିଲେ ବାଳକ ବେଶରେ ॥
ଭାଦ୍ରବ ଶୁକ୍ଳାଷ୍ଟମୀ ଦିନ । ବେଳ ମଧ୍ୟାହ୍ନ କାଳେ ଜନ୍ମ ॥
ଜନ୍ମ ମରଣ ଆଦି ଯେତେ । ପିତା ତା କଲେ ଶୁଦ୍ଧଚିତ୍ତେ ॥
ବାଳକ ସଙ୍ଗେ ଖେଳୁଥାନ୍ତି । ହରେ ରାମ କୃଷ୍ଣ ବୋଲନ୍ତି ॥
କାଳେଣ ବ୍ରତ ବନ୍ଧ୍ୟା ସିଦ୍ଧି । ଅଳ୍ପକେ ସର୍ବ କର୍ମ ସାଧି ॥
ଦ୍ୱାଦଶ ବରଷର କାଳେ । ପିତା ବିବାହ ବସ୍ତୃରଲେ ॥
ପିତାଙ୍କୁ ବଞ୍ଚା ନାସ୍ତି କଲେ । ନିର୍ମିଳେ ବିଦ୍ୟାଏଁ ପଶିଲେ ॥
ଯଜୁର୍ବେଦ ସାମବେଦକୁ । କଣ୍ଠସ୍ଥ କଲେ ସେ ଏହାଙ୍କୁ ॥
କଳାପ ବର୍ଦ୍ଧମାନ ଦୁଇ । ରଖିଲେ ଜିହ୍ୱା ଅଗ୍ରେ ନେଇ ॥
ସକଳଶାସ୍ତ୍ରେ ପୂର୍ଣ୍ଣ ହେଲେ । ଭାରତ ସମଗ୍ର ପଢ଼ିଲେ ॥
ଶ୍ରୀ ରାମାୟଣ ଗ୍ରନ୍ଥ ସାଧି । ଶ୍ରୀ ଭାଗବତେ ଦେଲେ ବୁଦ୍ଧି ॥
ଦ୍ୱାଦଶସ୍କନ୍ଧ ଭାଗବତ । ଟୀକା ଟିପ୍ପଣୀ ସହିତ ॥

ହେଲା ଅଷ୍ଟାଦଶ ବରଷ । ଏମାନ ସାଧିଲେ ବିଶେଷ ॥
ବଟ ଗଣେଶଙ୍କ ଆଗରେ । ଶ୍ରୀ ଭାଗବତ ନିରନ୍ତରେ ॥
ବକୁଣ ଆନ୍ତି ସୁଖ ପାଇ । ଗଣେଶ ଦେଉଥାନ୍ତି କହି ॥
ବୋଲଇ ବିପ୍ର ଦିବାକର । ଜଗନ୍ନାଥ ମୋତେ ଉଦ୍ଧର ॥

ଇତି ଶ୍ରୀ ଜଗନ୍ନାଥାମୃତେ ଶ୍ରୀ ଅତିବଡ଼ ଜଗନ୍ନାଥ ଦାସ
ଅନୁକ୍ରମଣି ନାମ ପ୍ରଥମୋଽଧ୍ୟାୟଃ ।



# ଦ୍ୱିତୀୟ ଅଧ୍ୟାୟ ।

ଶୁଣ ସୁଜନେ ଦେଇ ଚିତ୍ତ । ଶୁଣିଛ ଚରିତ ଅମୃତ ॥
ଯହୁଁ ସେ ଚୈତନ୍ୟ ଗୋସାଇଁ । ଶଚୀଙ୍କ ଗର୍ଭେ ଜନ୍ମ ହୋଇ ॥
କୁଳ କର୍ମ ତ୍ୟଜ୍ୟ ସାରିଲେ । ପୁଣ ସନ୍ନ୍ୟାସ ଦୀକ୍ଷା କଲେ ॥
ବୈଷ୍ଣବ ବୃନ୍ଦ ସଙ୍ଗେ ଘେନି । ବହୁତ ବୁଲିଲେ ମେଦିନୀ ॥
ବହୁତ କ୍ଷେତ୍ର ତୀର୍ଥ କଲେ । ବୃନ୍ଦାବନ ଆଦି ବୁଲିଲେ ॥
ନ ପାଇ ପ୍ରେମ ଭକ୍ତି ରସ । ପୁରୁଷୋତ୍ତମରେ ପ୍ରବେଶ ॥
ଯାଇଁ ମଠରେ ରହିଥାନ୍ତି । ଜଗନ୍ନାଥଙ୍କୁ ଦେଖି ଯାନ୍ତି ॥
ଏରୂପେ କେତେ ଦିନ ଗଲା । ଶୁଣ ଶ୍ରୀ ଚଇତନ୍ୟ ଲୀଳା ॥
ଶ୍ରୀ ଅତିବଡ଼ ଜଗନ୍ନାଥ । ଦଶମସ୍କନ୍ଧ ଭାଗବତ ॥
ଶ୍ରୀ ବ୍ରହ୍ମ ସୂତ୍ରର ବିସ୍ତର । କହନ୍ତି ଗଣେଶ ଅଗର ॥
ଯେ କୃଷ୍ଣ ଅଗ୍ରେ ପଢେଜନ୍ତି । ବେଦ ବଚନକୁ ମଣ୍ଟନ୍ତି ॥
କେବଳ ଲୋଭ ପାଇଁ କ୍ଳେଶ । ପ୍ରେମ ନ ଲଭେ ଅବଶେଷ ॥
ଯେମନ୍ତ ତୁଷ କୁଟିବାରେ । ତଣ୍ଡୁଳ ନ ମିଳେ ତହିଁରେ ॥
ସେହି ପ୍ରକାରେ କୃଷ୍ଣ ଗୀତ । ଅନ୍ୟ ଭଜନେ ମରେ ବୁଡ଼ ॥
ଏହି ସମୟେ ଶ୍ରୀ ଚୈତନ୍ୟ । ସଙ୍ଗତେ ଘେନି ସଖାଗଣ ॥
ବଟତଳରେ ବିଜେ କଲେ । ପୁରାଣ ଶୁଣି ତୋଷ ହେଲେ ॥

ପ୍ରେମଭରେଣ ଶ୍ରୀ ଚୈତନ୍ୟ । ଦାସଙ୍କୁ କଲେ ଆଲିଙ୍ଗନ ॥
ଅଢ଼ାଇ ଦିବସ ପର୍ଯ୍ୟନ୍ତେ । ଭୁଲିଁ ରହିଲେ ପ୍ରେମ ଚିତ୍ତେ ॥
ପ୍ରେମ ଛୁଡ଼ି ଧଇର୍ଯ୍ୟ ହୋଇ । କଲ୍ୟାଣ କରିଲେ ଗୋସାଇଁ ॥
ଦେଉଳ କରି ପ୍ରଦକ୍ଷିଣ । ଜଗନ୍ନାଥଙ୍କୁ କଲେ ମାନ୍ୟ ॥
ଦ୍ୱାଦଶ ବିଧ ଦଣ୍ଡବତ । କଲେ ସେ ପ୍ରଭୁଙ୍କ ଅଗ୍ରତ ॥
ବିପ୍ରେ ବୋଇଲେ ଶ୍ରୀ ଚୈତନ୍ୟ । ତୁମ୍ଭେ ଶ୍ରୀ ମୂର୍ତ୍ତି ନୋହେ ଭିନ୍ନ ॥
ଚୈତନ୍ୟ ଚରିତ ଅମୃତ । ଚଇତନ୍ୟଙ୍କର ଏ ଭକ୍ତ ॥
ଏରୂପେ ଦେବ ଚଇତନ । କହିଲେ ବିପ୍ର ସନ୍ନିଧାନ ॥
ଜଗନ୍ନାଥ ବ୍ରହ୍ମ ବୋଲିଣ । ନ ଆସେ ମୋହର ମୁଖେଣ ॥
ସକଳ ଘଟେ ବ୍ରହ୍ମ ରହି । ସମାନ ଭାବେ ମୁଁ ଡ଼ରଇ ॥
ଏହାଙ୍କ ଦାସ ହେବା ପାଇଁ । ବୋଲିବାକୁ ଡ଼ରୁଛି ମୁହିଁ ॥
ଏ ଦାସ ଅବକ୍ଷ୍ୟ ହୁଅନ୍ତି । ମୁଁ କି କରିବ ଏତେ ଗତି ॥
ଏହାଙ୍କ ଯେ ନିଜ ସ୍ୱରୂର । ସେ ଅଟେ ମହା ପ୍ରେମଘର ॥
ହୃଦପଦ୍ମମଧ୍ୟେ ତାହା ଥୋଇ । ନିଷ୍କାମେ ଡାକୁଥିବ ମୁହିଁ ॥
ଏମନ୍ତ କହି ଶ୍ରୀ ଚୈତନ୍ୟ । ପୁନଃ ପୁନଃ କରନ୍ତି ମାନ୍ୟ ॥
ବୈଷ୍ଣବବୃନ୍ଦ ଯେବା ଥିଲେ । ଦେଖି ଏମନ୍ତ ବିଚାରିଲେ ॥
ଓଡ଼ିଆ ବ୍ରାହ୍ମଣ ସଙ୍ଗତେ । ଛିବ ବଢ଼ାଇଲେ ନିରତେ ॥
ଏହି ରାଜ୍ୟରେ ଏ ରହିବେ । ଓଡ଼ିଆ କର୍ମ ଆଚରିବେ ॥
ଏ ସଙ୍ଗ ଛଡ଼ାଇବା ଆମ୍ଭେ । ଏମନ୍ତ ବିଚାରି ଆରମ୍ଭେ ॥
ବୋଇଲେ ଉତ୍କଳ ବ୍ରାହ୍ମଣ । ଅଣ ଉପଦେଶିଆ ପୁଣ ॥
ତାହାଙ୍କୁ ସ୍ପର୍ଶ ନ କର । ନିଷେଧ ଅଛଇ ଶାସ୍ତ୍ରର ॥
ପାଷଣ୍ଡ ସଙ୍ଗ ନ ବାନ୍ଧିବ । ନାନା ଦେବତା ନ ପୂଜିବ ॥
ଅଣ ଉପଦେଶିଆ ନର । ଅଙ୍ଗ ନ ଛୁଇଁବ ତାହାର ॥
ବ୍ୟାଘ୍ର ସର୍ପ କୁମ୍ଭୀର ପାଇଁ । ବଞ୍ଚିବ ତାଙ୍କୁ ପ୍ରୀତିହୋଇ ॥
ଅଣ ଉପଦେଶିଆ ଜନ । ଅସ୍ପରଶ ନର ସମାନ ॥
ଶୁଣିଣ ଆଜ୍ଞା ଶ୍ରୀ ଚଇତନ୍ୟ । ଏ ନୋହେ ଉତ୍ତମ ବଚନ ॥

ଶ୍ଳୋକଃ ।

ଅଦ୍ୟାପି ଶ୍ରୂୟତେ ଘୋଷୋ ଦ୍ୱାରକାୟାଂ ଘନେ ଘନେ ।
ଅବଦ୍ୟା ବା ସବଦ୍ୟା ବା ବ୍ରାହ୍ମଣୋ ମାମକୀ ତନୁଃ ॥

ସର୍ବ ଦେବତା ବପ୍ର ଦେହେ । ବ୍ରାହ୍ମଣ ଦେହେ ବିଷ୍ଣୁ ରହେ ॥
ଉପଦେଶହିଁ ହୋଇନାହିଁ । ତେବେହେଁ ଭକ୍ତି ଅଙ୍ଗ ସେହି ॥

ଶ୍ଳୋକଃ ।

ଯଦଙ୍ଗେ ବସତେ କୃଷ୍ଣୋ ଯଦଙ୍ଗଂ ଭକ୍ତି ରୂପିଣଂ ।
ତସ୍ୟ କୃଷ୍ଣସ୍ୟ ବିପ୍ରସ୍ୟ ଭିନ୍ନାଭିନ୍ନଂ ନ କାରୟେତ୍ ॥

ଏମନ୍ତ ଆଜ୍ଞା ଯେଣୁ ହୋଇ । ପୁଣି ସମସ୍ତେ ସ୍ଥିରେ ରହି ॥
ଏ ବାରତା ଦାସେ ପାଇଲେ । ପ୍ରଭୁଙ୍କ ଦର୍ଶନକୁ ଗଲେ ॥
ବେଜ ଅଭଡ଼ା ଭୋଜନ କରେ । ଭେଟିଲେ ଯାଇଁ ମଠାରେ ॥
ହସ୍ତ ଯୋଡ଼ିଣ ଦଣ୍ଡବତ । ପ୍ରଭୁଙ୍କୁ କଲେକ ତୁରିତ ॥
ଆଜ୍ଞା ଦେଲେକ ଶ୍ରୀ ଚୈତନ୍ୟ । ଆସ ହେ ଦାସେ ଭକ୍ତି ପୂର୍ଣ୍ଣ ॥
ଦାସେ ବୋଇଲେ ଯୋଡ଼ିକର । ଉପଦେଶ ନାହିଁ ଆମ୍ଭର ॥

ଶ୍ଳୋକଃ ।

ବ୍ରତଂ ଦାନଂ ତପଃ ସ୍ନାନଂ ଶୌଚଂ ଶ୍ରାଦ୍ଧଂ ତଥା ମଖଂ ।
ନଶ୍ୟନ୍ତି ସର୍ବ ଧର୍ମାଣି ଯଥା ଚ ଉପଦେଶତଃ ॥

ଏରୂପେ ଜଗନ୍ନାଥ ଦାସେ । କହିଲେ ପ୍ରଭୁଙ୍କର ପାଶେ ॥

ଶ୍ଳୋକଃ ।

କୋଟି ଜନ୍ମକୃତଂ ପାପଂ ଜ୍ଞାନାଜ୍ଞାନକୃତଂ ଚ ଯତ୍ ।
ଦୀକ୍ଷାଗ୍ରହଣ ମାତ୍ରେଣ ପଳାୟନ୍ତେ ନ ସଂଶୟଃ ॥

କୋଟି ଜନ୍ମର ପାପ ଥାଇ । ଜ୍ଞାନେ ଅଜ୍ଞାନେ ବାହାରଇ ॥
ଦୀକ୍ଷାଗ୍ରହଣ ମାତ୍ରେ ସେହି । ନିଷ୍ପାପୀ ହୋଇ ନିସ୍ତରଇ ॥

ଶ୍ଳୋକଃ ।

ତତୋ ବାଞ୍ଛିତସିଦ୍ଧିଃ ସ୍ୟାତ୍ ଧନଧର୍ମ ସୁଭକ୍ତିତଃ ।
ଅନ୍ତେ ବିଷ୍ଣୁପୁରଂ ଯାତ ଦ୍ରବ୍ୟଂ ସେବକ ସେବତଂ ॥

ବ୍ରହ୍ମହତ୍ୟା ସୁରାପାନ ସ୍ୱର୍ଣ୍ଣସ୍ତେୟାଦ୍ଧ ପାତକାନ୍ ।
ଉପପାତକ ଲକ୍ଷାଣି ହନ୍ତି ସାକ୍ଷାପ୍ରଧାନତଃ ॥

ବ୍ରହ୍ମହତ୍ୟା ଯେ ସୁରାପାନ । ଯେ ଅବା ହରଇ ସୁବର୍ଣ୍ଣ ॥
ଏ ଆଦି ପାପ ଲକ୍ଷ ଲକ୍ଷ । ସାକ୍ଷାରେ ହରଇ ପ୍ରତ୍ୟକ୍ଷ ॥
ଯେ ପ୍ରାଣୀ ଉପଦେଶ ହୋଇ । ଯାହା ବାଞ୍ଛିତ ତା ଲଭଇ ॥
ଧନ ଧର୍ମ ଭକ୍ତି ଲଭନ୍ତି । ସାଧନେ ସର୍ବ ଫଳ ପାନ୍ତି ॥
ଶୁଣିମା ହେଉ ସାଧୁଜନ । ଗୁରୁ ପ୍ରଚ୍ଛିନ୍ନର ବିଧାନ ॥

ଶ୍ଳୋକଃ ।

ମହାକୁଳ ପ୍ରସୂତୋଽପି ସର୍ବଶାସ୍ତ୍ର ବିଶାରଦଃ ।
ସହସ୍ର ସଂଖ୍ୟାଧ୍ୟାୟୀଶ୍ଚ ନ ଗୁରୁଃ ସ୍ୟାଦବୈଷ୍ଣବଃ ॥

ଶ୍ରେଷ୍ଠ କୁଳରେ ଜନ୍ମ ହୋଇ । ସମସ୍ତ ଶାସ୍ତ୍ରହିଁ ଜାଣଇ ॥
ସହସ୍ର ଶାଖା ବେଦମାନ । ପଢ଼ି ହୋଇଥାଇ ନିପୁଣ ॥
ସେ ଯେବେ ବୈଷ୍ଣବ ନୁହଇ । ଗୁରୁ ପଦକୁ ନ ଯୋଗାଇ ॥

ଶ୍ଳୋକଃ ।

ବ୍ରାହ୍ମଣା ବୈଷ୍ଣବା ଭକ୍ତା ସତ୍ୟ ସାତ୍ତ୍ୱିକଧୀରତା ।
ତେଷାଂ ସାକ୍ଷାଗ୍ରହଣେ ଚ ସଦ୍‌ବୁଦ୍ଧିଃ ସକୁଳାନବୈ ॥

ବ୍ରାହ୍ମଣ ହୋଇ ବଇଷ୍ଣବ । ଭକ୍ତିରେ ତତ୍ତ୍ୱ ବୃଦ୍ଧି ଥିବ ॥
ସତ୍ୟ କହିବ ନିରନ୍ତର । ସାତ୍ତ୍ୱିକ ପଣେ ହେବ ଧୀର ॥
ତାଠାରୁ ଉପଦେଶ କରେ । ନିଜ ଶତ କୁଳ ଉଦ୍ଧାରେ ॥
ସ୍ୱର ଜାତରୁ ଉପଦେଶ । ହୋଇ ଯେ ଯହିଁରେ ନିବାସ ॥

ଶ୍ଳୋକଃ ।

ବ୍ରାହ୍ମଣେ ବ୍ରହ୍ମଲୋକଞ୍ଚ ଇନ୍ଦ୍ରଲୋକଞ୍ଚ କ୍ଷତ୍ରିୟଃ ।
ପ୍ରଜାପତ୍ୟଂ ତଥା ବୈଶ୍ୟୋ ଗନ୍ଧର୍ବଂ ଶୂଦ୍ର ସାକ୍ଷିତଃ ॥

ବ୍ରାହ୍ମଣଠାରୁ ଉପଦେଶ । ବ୍ରହ୍ମଲୋକରେ ତାର ବାସ ॥
କ୍ଷତ୍ରିୟେ ଉପଦେଶ କରେ । ବସଇ ଦେବଙ୍କ ସଙ୍ଗରେ ॥
ବୈଶ୍ୟଙ୍କଠାରୁ ମନ୍ତ୍ରପାଇ । ବସଇ ପିତୃଲୋକେ ଯାଇଁ ॥
ଶୂଦ୍ରଙ୍କଠାରୁ ଉପଦେଶ । ଗନ୍ଧର୍ବଲୋକରେ ନିବାସ ॥
ଅବଇଷ୍ଣବର ଏ ମତ । ବୈଷ୍ଣବେ ସର୍ବସିଦ୍ଧି ପାନ୍ତ ॥

ଶ୍ଳୋକଃ ।

ଅପୁତ୍ରୋ ମୃତପୁତ୍ରଶ୍ଚ କୃଷଣୀ ବାମନ ସ୍ତଥା ।
କୁନଖୀ ଶ୍ୟାବଦନ୍ତଶ୍ଚ କୁଷ୍ଠଶ୍ଚ ଶଠରୂପକଃ ॥
ହୀନାଙ୍ଗୋ କଷ୍ଟବେରୀ ଚ କୁଳମୂଳ ବିବର୍ଜିତଃ ।
ଅଗୃହସ୍ଥୋଽପି ନହି ଦୀକ୍ଷା ଏବମେବ ବିବର୍ଜ୍ଜୟେତ୍ ॥
ଅସ୍ବର୍ଣଶ୍ଚ କଳଙ୍କଶ୍ଚ ବୈରପକ୍ଷାଶ୍ରିତଶ୍ଚ ଯଃ ।
ଗର୍ବବାଦୀ ଗୁରୁଭ୍ରଷ୍ଟ ଅଧର୍ମୋ ହି ତଥାତ୍ୟଜେତ୍ ॥
ଅନ୍ଧଶ୍ଚ ବଧିରସ୍ତେ ମୂକୋ ଜଡ଼ତ୍ୱମଥ ପଙ୍ଗୁତା ।
ଶୌଚଭ୍ରଷ୍ଟୋଽପ୍ୟମର୍ଯ୍ୟାଦସ୍ତଂ ଗୁରୁଂ ପରିବର୍ଜ୍ଜୟେତ୍ ॥
ଶଠଶ୍ଚ କୃପଣୋ ମୂର୍ଖଃ ଚପଳେ ଭକ୍ତିବର୍ଜ୍ଜିତ ।
ପରଦାରରତୋ ବାପି କୁଟବୁଦ୍ଧି ବିବର୍ଜ୍ଜୟେତ୍ ॥
ଅଶ୍ୱଶ୍ଚ ପଶୁଶ୍ଚ ଗ୍ରାମଯାଚକାଶ୍ଚିକିତ୍ସକାଃ ।
ଅଜ୍ଞକାଶ୍ଚ ସୂପକାଶ୍ଚ ନମସ୍କାରବିବର୍ଜ୍ଜିତାଃ ॥

ଏ ଯେ ସକଳ ଗୁରୁ ହୋଇ । ଅପରାଧ ଅଛନ୍ତି ପାଇ ॥
ଏଥିରୁ ହେଲେ ଉପଦେଶ । ନାଶଇ ଧନ ଧର୍ମ ଯଶ ॥
ମନ୍ତ୍ର ସାଧନେ ସିଦ୍ଧି ନୋହି । ଭକ୍ତି ମିଳଇ ତାକୁ କାହିଁ ॥
ଏଥିଁ ଯେ ସୁବୁଦ୍ଧି ହୋଇବ । ସେ ଗୁରୁ ବେଗେ ପ୍ରତେଜିବ ॥
ଯେଉଁ ଗୁରୁର ପୁତ୍ର ନାହିଁ । ତାଠାରୁ ଉପଦେଶ ନୋହି ॥
କୁବୁଣ୍ଡୀ କି ଅବା ବାମନ । ତାଠାରୁ ନ କର ଗ୍ରହଣ ॥
ଯାହାର ନଖ ମରଥିବ । ଦନ୍ତ ବେହଡ଼ା ଯାର ହେବ ॥

କୁବ୍‌ଜା ଶଠ ଅରୂପ ଜନ । ନାମ ନ କରିବ ଗ୍ରହଣ ॥
କଣା ଶ୍ଳେଷ୍ମା କେମ୍ପା ଗୋଦର । ଖୋଡ଼ ଅଛି ଯାର ଅଙ୍ଗର ॥
ଯାହାର କୁଳ ମୂଳ ନାହିଁ । ଗୁରୁ ପଣକୁ ନ ଯୋଗାଇ ॥
ଯେ ଗୁରୁ କରେ ପୁରୋହିତ । ଗୁରୁ ପଣେ ତେଜିବ ଥାତ ॥
ଯାହାକୁ ଛୁଇଁ ନ ଯୋଗାଇ । ବସ୍ତ୍ରଂରେ ଯେ ସାନ ହୋଇ ॥
ବଇର ପକ୍ଷ ଗୁରୁ ଯେହୁ । ଉପଦେଶ ନ ହେବ ତହୁଁ ॥
ଯେ ବାଦ କରେ ସବଠାରେ । ସ୍ମରଣ ନ କରିବ ତାରେ ॥
ଆପଣା ଧର୍ମ ଯେ ଛାଡ଼ଇ । ତାଠାରୁ ଉପଦେଶ ନୋହି ॥
ଅନ୍ଧ ବା ବଧିର ଯେ ଗୁରୁ । ତାହାଙ୍କୁ ତ୍ୟାଗ କର ଦୂରୁ ॥
ବନ୍ଧୁକ ଅଟଇ ଯେ ଜନ । ଜଡ଼ା ବା ଶ୍ଳେଷ୍ମା ରୋଗାଧୀନ ॥
ନଜ ଶଉଚ ନ କରଇ । ସେ ଗୁରୁ ଛୁଇଁ ନ ଯୋଗାଇ ॥
ଘଠ କୃପଣ ମୂର୍ଖଜନ । ଗୁରୁକୁ ନୁହନ୍ତି ଭଜନ ॥
ମିଛେ ବଇଷ୍ଣବ ବୋଲାଇ । ଭକ୍ତିର ଅଶେ ନ କରଇ ॥
ମାଦକ ଦ୍ରବ୍ୟ ଯେ ଭକ୍ଷଇ । ମଦିରା ପାନ ଯେ କରଇ ॥
ପର ଦାସକୁ ଚିତ୍ତ ଦେଇ । ସେ ଗୁରୁ ଛୁଇଁ ନ ଯୋଗାଇ ॥
ଯେ ଛନ୍ଦ କରି କଥା କହି । ନପୁଂସକ ଯେହୁ ଅଟଇ ॥
ଯେ ଅଶ୍ୱ ବଣିଜ କରଇ । ସ୍ୱହସ୍ତେ ପଶୁ ଯେ ମାରଇ ॥
ଗ୍ରାମଯାଜ ପଦ ଯାହାର । ତା ନାମ ଦୂରେ ପରିହର ॥
ଯେ ବୈଦ୍ୟପଣକୁ କରଇ । ଯେ ସେବା କରି ଅନ୍ନ ବହି ॥
ଯେ ଅବା ସ୍କନ୍ଧ ପରଷନ୍ତି । ନମସ୍କାର ଯୋଗ୍ୟ ନୁହନ୍ତି ॥
ଏରୂପେ ଗୁରୁଙ୍କର ଚିହ୍ନ । ବୁଝି ବୈଷ୍ଣବ ମନ୍ତ୍ର କର୍ଣ୍ଣ ॥
କାଳେ ବା ବୋଲିବ ଏମନ୍ତ । ସେତ ନାମରେ ତଦଗତ ॥
ଅନେକ ବିଷୟ ଜାଣନ୍ତି । ଭକ୍ତିରେ ତତ୍ପର ଅଟନ୍ତି ॥
ଏ କପଟୀ ବୈଷ୍ଣବ ନୋହିଲେ । ଗୁରୁ ପଦକୁ ନ ଶୋହିଲେ ॥
ତାଙ୍କର ପୂର୍ବେ ଅଛି ଦୋଷ । ଏବେ ଅର୍ଜୁଛନ୍ତି ବିଶେଷ ॥

ଏ ଦୋଷ ଛାଡ଼ିବା ପର୍ଯ୍ୟନ୍ତେ । ଗୁରୁ ବୋଲାଇବେ କେମନ୍ତେ ॥
ଯେମନ୍ତେ ଦ୍ରବ୍ୟ ବୀଜ ନେଇ । ତପତ ଭୂମିରେ ବୁଣଇ ॥
ଯେତେ ଯତନ କଲେ ତହିଁ । କେବେହେଁ ବୃକ୍ଷ ନ ଯୋଗାଇ ॥
ଏହି ପ୍ରକାରେ ଦ୍ରବ୍ୟ ମନ୍ତ୍ର । ଉତ୍ତମ ଭକ୍ତି ଦ୍ରବ୍ୟ ଯନ୍ତ୍ର ॥
ଏ ମନ୍ତ୍ର ସ୍ୱଗୁରୁ ହସ୍ତେ ହେଲେ । ବ୍ୟର୍ଥ ହୋଇଯାଏ କାଳେ ॥
ଯେମନ୍ତ ଉତ୍ତମ ବ୍ରାହ୍ମଣ । ବେଦ ପୁରାଣେ ସେ ନିପୁଣ ॥
ଚଣ୍ଡାଳ ଘରେ ସେ ଖାଇଲା । ବ୍ୟର୍ଥ ଏତେ ଗୁଣ ହେଲା ॥
ଏମନ୍ତ ହୋଇ ଯେ ବୈଷ୍ଣବ । କେବେହେଁ ଗୁରୁ ନ କରିବ ॥
ଉତ୍ତମ ଭକ୍ତିରେ ସାଧିବ । ତେବେ ଉତ୍ତମ ଭକ୍ତି ହେବ ॥
ଯେ ଅବା ନିଷ୍ଟସ୍ପୃହ ବୈରାଗୀ । ଏ ଦୋଷ ତାରେ ପରିତ୍ୟାଗୀ ॥
ଯେଣୁ ଏକାନ୍ତେ ଭଜେ ହରି । ସେ ସର୍ବ ବର୍ଣ୍ଣ ଅଧିକାରୀ ॥
ବ୍ରାହ୍ମଣ କ୍ଷତ୍ରୀ ଶୂଦ୍ର ବୈଶ୍ୟ । ନାନା ଜାତି ଯତି ସନ୍ନ୍ୟାସ ॥
ଶୂଦ୍ର ହେଉ ବା ସ୍ତ୍ରୀ ହେଉ । ଦ୍ୱାଦଶ ପ୍ରେମ ଜାଣେ ଯେଣୁ ॥
ଏକଇ କଶୋରୀ କଶୋର । ଯେ ପ୍ରେମ ଭାବ ଯୁଗଳର ॥
ଏ ଗୁଣ ଯେ ଭକ୍ତ ଜାଣଇ । ସ୍ୱୟଂ ପ୍ରେମାଙ୍ଗ ରୂପ ସେହି ॥
ବୈଷ୍ଣବ ମଧ୍ୟେ ଧନ୍ୟ ସେହି । ଗୁରୁ ପଣକୁ ଯୋଗ୍ୟ ହୋଇ ॥
ଏମନ୍ତ ଗୁରୁଠାରୁ ନାମ । ଯେବା ଗ୍ରହଣ କଲା କର୍ଣ୍ଣ ॥
ସ୍ୱମାଦ୍ଧ ମନ୍ତ୍ରରାଜ ଦୁଇ । ମନ୍ତ୍ରମାନଙ୍କ ସାର ଏହି ॥
ଯେ ସେବେ ସେ ଗୁରୁ ପଦ୍ମର । ଧନ୍ୟ ଶିଷ୍ୟ ପଣ ତାହାର ॥
ଏମନ୍ତ ଜଗନ୍ନାଥ ଦାସେ । କହିଲେ ଶ୍ରୀଚୈତନ୍ୟ ପାଶେ ॥
ହେ ଦେବ ଭକତ ସାଗର । ଶ୍ରୀହରି ନାମ ଅଜ୍ଞା କର ॥
ଶୁଣି ହରଷ ପ୍ରଭୁ ହେଲେ । ମଧୁ ବଚନେ କହିଲେ ॥
ଏହାଙ୍କୁ ଉପଦେଶ ଦିଅ । ସ୍ୱମାଦ୍ଧ କୀର୍ତ୍ତନ କରାଅ ॥

ଶ୍ଳୋକଃ—

ହରେର୍ନାମ ହରେର୍ନାମ ନାମୈବ ଶରଣଂ ପରଂ ।
କଳୌ ନାସ୍ତ୍ୟେବ ନାସ୍ତ୍ୟେବ ନାସ୍ତ୍ୟେବ ଗତିରନ୍ୟଥା ॥

ଯେହ୍ନକ୍ଷ ମନ୍ତ୍ର ବଳରାମ । ବୈଷ୍ଣବ ମାନଙ୍କ ଉତ୍ତମ ॥
ସତ୍ୟ ସାତ୍ତ୍ୱିକ ମହାଧୀର । ପ୍ରେମରସେ କବା ସାଗର ॥
ଅସନ ଶୟନ ଭୋଜନେ । ଅବର ସ୍ନାନ ଜଳପାନେ ॥
ରାତ୍ର ଦବସ ନ ଜାଣନ୍ତ । ନାମରେ ମତ୍ତ ହୋଇଥାନ୍ତ ॥
ଆସ୍ୱାଦ କର ନାମାମୃତ । ଅନନ୍ଦେ ପ୍ରେମ ପୁଲକିତ ॥
ପ୍ରେମ ଭକ୍ତି ଦେଖି ତାଙ୍କର । କରୁଣା କଲେ କୃପାକର ॥
ସେ ପ୍ରଭୁ ମନ୍ତ୍ର ବଳରାମେ । ସିଦ୍ଧି କର ବସି ଆସନେ ॥
ହରି ପାଦାକୃତି କରଣ । ତିଳକ ଦେଲେ କପାଳେଣ ॥
ହରି ମନ୍ଦିର ସେ ବୋଲାଇ । ନାସାର୍ଦ୍ଧୁ କେଶ ଯାଏ ଶୋହ ॥
ପଦ୍ମ ତୁଳସୀ ଧାଡ଼ୀ ମାଳେ । ଦେଲେ ସେ ଦାସଙ୍କର ଗଳେ ॥
ହୃଦ ତିଳକ ପଦ୍ମାକାର । ଶଙ୍ଖ ଚକ୍ର ବେଣୁ ବାହୁର ॥
ତାହୁରେ ମୁଦ୍ରାଏ ବସାଇ । କଟାଗର ପାରୁଶେ ଦେଇ ॥
ନାଭି କଟି ଚାରି ପାରୁଶେ । ଶ୍ରୀବତ୍ସ ଚନ୍ଦ୍ର ଚତୁର୍ଦ୍ଦଶେ ॥
ଅସନ ଶୁଦ୍ଧି କରାଇଲେ । ବାକ୍ୟ ସଂକଳ୍ପ ଦେଶକାଳେ ॥
ଡୋର କୌପିନ ଅରମ୍ଭିଲେ । ବସିଣ ଋଷି ଛନ୍ଦ କଲେ ॥
କରନ୍ୟାସ ଯେ ଅଙ୍ଗନ୍ୟାସ । ଧ୍ୟାନ ଶ୍ରୀ ଜଗନ୍ନାଥ ବେଶ ॥
ବୈଷ୍ଣବମଣ୍ଡଳୀ ମଧ୍ୟରେ । ଶ୍ରୀ ମହାପ୍ରଭୁଙ୍କ ସମ୍ମୁଖରେ ॥
କଲେ ଯେ ନାମ ଉପଦେଶ । ନାମାଦ୍ଧ କୀର୍ତ୍ତନ ସ୍ୱରସ ॥
ପୁଣ ମନ୍ତ୍ରରାଜ କହିଲେ । ପ୍ରେମ ଷୋଡ଼ଶ ପୁଣି ଦେଲେ ॥
ରାଧା କୃଷ୍ଣ ପ୍ରେମ ରସରେ । ଯୁଗଳ ଗାୟତ୍ରୀ କହିଲେ ॥
ଠାକୁର ଠାକୁରାଣୀଙ୍କର । କହିଲେ ମନ୍ତ୍ର ଯେବା ସାର ॥
ଶ୍ରୀ ଜଗନ୍ନାଥ ପଞ୍ଚନାମ । କହିଲେ ଶ୍ରୀଗୁରୁ ଉତ୍ତମ ॥
କୃଷ୍ଣାଦ୍ଧ ବୋଲି ମନ୍ତ୍ର ଯେହ । ସେକାଳେ ନ ଜାଣନ୍ତ କେହ ॥
ବେଦ ବଚନ ନ ଛାଡ଼ନ୍ତ । ବ୍ରହ୍ମା ଆଜ୍ଞା ସର୍ବେ ମାନନ୍ତ ॥
ଏମନ୍ତେ ଉପଦେଶ ବଧ । ଦାଚେସ ପାଇଲେ ସଙ୍କେତ [illegible] ॥

ଏମନ୍ତ ମାନଙ୍କରେ ଅଣ । ଅଛଇ ଦବାଙ୍କର ଦାସ ॥
ଏମନ୍ତ ଯେ କରେ ଗ୍ରହଣ । ସଂସାରୁ ହୁଏ ସେ ତାରଣ ॥
ଆପଣା କୁଳମନ୍ତ୍ର ଏହୁ । ପର କୁଳ ମନ୍ତ୍ର ଦେଖାଇ ॥
ଯେ ପ୍ରାଣୀ ଭଣ୍ଡାଇବ ନେଇ । ପ୍ରାଣ ଗଲେହେଁ ଯିବ ନାହିଁ ॥
ସଙ୍ଗ ଯୁବତୀ ସାମ୍ୟେ ଥିବ । ମନ୍ମଥଜ ଭଜ ତରିବ ॥

ଇତି ଶ୍ରୀ ଜଗନ୍ନାଥାମୃତେ ଶ୍ରୀ ଅତିବଡ଼ ଜଗନ୍ନାଥ ଗୋସାଇଁ ଅନୁକ୍ରମଣି ନାମ ଦ୍ୱିତୀୟୋଽଧ୍ୟାୟଃ ।



## ତୃତୀୟ ଅଧ୍ୟାୟ ।

ଶୁଣ ସ୍ୱଜନେ ଦେଇ ଚିତ୍ତ । ଅତିବଡ଼ ଗୋସାଇଁ କୃତ୍ୟ ॥
ଏମନ୍ତେ ଗଲା କେତେ ଦିନ । ସେ ଜଗନ୍ନାଥ ଦାସେ ପୁଣ ॥
ଦିନକୁ ଦିନ ନୂଆ ପ୍ରୀତ । ଶ୍ରୀ ଚଇତନ୍ୟ କଲେ ଭକ୍ତି ॥
ପ୍ରଭୁଙ୍କୁ ଉଠି ଦଣ୍ଡବତ । କରଇ ଶ୍ରୀମୁଖ ଧଉତ ॥
ଶୟନ ଶଯ୍ୟାକୁ ମାର୍ଜ୍ଜନ । ଶ୍ରୀ ହସ୍ତେ ମୃତ୍ତିକା ଶୋଧନ ॥
ଦନ୍ତକାଷ୍ଠ ଦନ୍ତଧାବନ । ସ୍ନାନ ମାର୍ଜନେ ଜଳପାନ ॥
ଶ୍ରୀଅଙ୍ଗ ପ୍ରୋକ୍ଷଣ ବିଧାନ । ନବୀନ ବସ୍ତ୍ର ପରିଧାନ ॥
ସନ୍ନ୍ୟାସ ନିତ୍ୟକର୍ମ ମାନ । ଦଣ୍ଡ କମଣ୍ଡଳ ମାର୍ଜ୍ଜନ ॥
ଏରୂପେ ଯେବା କର୍ମମାନ । ପ୍ରଭୁଙ୍କ ସେବା ନିତ୍ୟକର୍ମ ॥
ଜଗନ୍ନାଥଙ୍କ ଦରଶନ । ଗହଣ ଖଟିବା ବିଧାନ ॥
ଏ ସେବା ଦେଖି ଚଇତନ୍ୟ । ଦାସକୁ ପୁଛିଲେ ବଚନ ॥
ହେ ଦାସେ ତୁମ୍ଭସେବା ଦେଖି । ଚିତ୍ତେ ହୋଇଲୁଁ ମହାସୁଖୀ ॥
ତୁମ୍ଭର ପୂର୍ବ କିଛି ଅଙ୍ଗ । ମୋ ଆଗେ କହ ସେ ପ୍ରସଙ୍ଗ ॥
ଏ ଆଜ୍ଞା ଶୁଣିକରି ଦାସେ । ବିସ୍ମିତ ହୋଇଲେ ହରଷେ ॥
ଯେ ତୁମ୍ଭ ଭକ୍ତିର ସ୍ୱରୂପ । କଳି କାଳ ଅଙ୍ଗ ସ୍ୱରୂପ ॥
ସର୍ବଜ୍ଞ ପୁରୁଷ ଈଶ୍ୱର । ତୁମ୍ଭଙ୍କୁ ଜାଣି ଅଗୋଚର ॥

ଶ୍ଳୋକଃ ।

ବିଷ୍ଣୁ ଚକ୍ର ପଦ୍ମଧାନ ଶ୍ରୀମଦ୍ ବୈକୁଣ୍ଠ ମନ୍ଦିରଂ ।
କର୍ଣ୍ଣିକା ପତ୍ର ବିସ୍ତାରଂ ରହସ୍ୟଂ କାର୍ଯ୍ୟମୀରିତଂ ।
ତତ୍ରୋପରି ସ୍ୱର୍ଣ୍ଣପୀଠେ ମଣିମଣ୍ଡପମଣ୍ଡିତଂ ।
କର୍ଣ୍ଣିକାସୁ ମହାଧାମ ଗୋବିନ୍ଦସ୍ଥଂ ମହାବ୍ୟସ୍ଥଂ ।
ତଦ୍ଦଳଂ ଦକ୍ଷିଣଂ ପ୍ରୋକ୍ତମତିଗୁହ୍ୟତମୋତ୍ତମଂ ।
ତତୋ ରସେ ମହାପୀଠେ ନିଜଗାମ ଯଦ୍ଦୁର୍ଗମଂ ।
ତନ୍ମଧ୍ୟେ ବସତେ କୃଷ୍ଣୋ ରାଧାଲିଙ୍ଗନତତ୍ପରଃ ।
ଏକାତ୍ମନା ମନୋବୃତ୍ତ୍ୟା ନିତ୍ୟଲୀଳାଂ ପ୍ରକାଶୟେତ୍ ।

ନିତ୍ୟ ବୈକୁଣ୍ଠ ନିଜସ୍ଥାନ । ଏକତ୍ର ଥିବେ ଭଗବାନ ॥
ଏକାତ୍ମା ଭାବରେଣ ଥିଲେ । ଅତି ସୁଖେଣ ଦୃଷ୍ଟି ଦେଲେ ॥
ଦେଖିଣ ରାଧାଙ୍କ ବଦନ । ହସିଲେ ଜଗତଜୀବନ ॥
ଯେ ହାସ୍ୟ କୋଟି କୋଟି ପୃଥ୍ୱୀ । କ୍ଷଣମାତ୍ରକେ ଜନ୍ମ ହନ୍ତି ॥
ସେ ହାସ୍ୟ ତୁମ୍ଭେ ଜନ୍ମହୋଇ । ପ୍ରଭୁଙ୍କ ଅଗ୍ରେ ଅଛ ରହି ॥
ରାଧାଙ୍କ ହାସ୍ୟରୁ ମୁଁ ଜାତ । ତୁମ୍ଭ ପଛରେ ହୋଇ ସ୍ଥିତ ॥
ତୁମ୍ଭଙ୍କୁ ଆଜ୍ଞାଦେଲେ ସେହିଁ । ମର୍ତ୍ତ୍ୟରେ ଅବତାର ହୋଇ ॥
ଏ କଳି କାଳ ବଳଅର । ହରିନାମ କୀର୍ତ୍ତନ କର ॥
ଅଚେତ କରାଅ ଚୈତନ୍ୟ । ତେଣୁ ଚୈତନ୍ୟ ତୁମ୍ଭନାମ ॥
ପୁଣି ଶ୍ରୀକୃଷ୍ଣ ମୋତେ ସେହିଁ । ବୋଇଲେ ଜାତହୁଅ ମହୀ ॥
ଏହି ସ୍ୱରୂପ ଭଜୁଥିବ । ଅନ୍ତେ ସେହି ଗତି ପାଇବ ॥
ଏଣୁ ଯୁଗଳ ପ୍ରେମ ବିନେ । ଅନ୍ୟେ ନ ରସେ ମୋର ମନେ ॥
ଏମନ୍ତ ଶୁଣି ଶ୍ରୀ ଚୈତନ୍ୟ । ନିଜ ଧାମରୁ କଲେ ଧ୍ୟାନ ॥
ପୂର୍ବ ସିଦ୍ଧାଙ୍ଗ ଗତି ପାଇ । ହରଷ ହୋଇଲେ ଗୋସାଇଁ ॥
ଆପଣା ଶ୍ରୀଅଙ୍ଗ ପାଶ୍ଲେଷ । ଶ୍ରୀକର ଘେନି ଅଙ୍ଗ କାନ୍ତି ॥

ଦାସଙ୍କ ଶିରେ ବାନ୍ଧିଦେଲେ । ଅତି ବଡ଼ ବୋଲି ବୋଇଲେ ॥
ଏ ବଡ଼ ଦୁର୍ଲଭ ଚରିତ । ଅଜ କହିଲ ମୋ ଅଗ୍ରତ ॥

ଶ୍ଳୋକଃ ।

ଯୋଗିନାମପି ଦୁଷ୍ପ୍ରାପ୍ୟଂ ସତ୍ୟଂ ପୁରୁଷ ଗୋଚରଂ ।

ଅତିବଡ଼ କଥା କହିଲ । ତେଣୁ ଅତିବଡ଼ ହୋଇଲ ॥
ଶ୍ରୀ ଅତିବଡ଼ ଜଗନ୍ନାଥ । ଦାସଙ୍କୁ ବୋଲନ୍ତି ଜଗତ ॥
ମହାପ୍ରଭୁଙ୍କ ମୁଖୁ ଶୁଣି । ସର୍ବେ ବୋଲନ୍ତି ଏହି ବାଣୀ ॥
ଏରୂପେ ଗଲା କେତେ ଦିନ । ପୁରୁଷୋତ୍ତମେ ଶ୍ରୀ ଚୈତନ୍ୟ ॥
ପ୍ରତି ଦିବସ ସ୍ନେହଭରେ । ଡାକନ୍ତି ଅତିବଡ଼ ନିତ୍ୟେ ॥
ଅତିବଡ଼ ବୋଲି ଡାକନ୍ତେ । ବୈଷ୍ଣବେ ଦୁଃଖକଲେ ଚିତ୍ତେ ॥
ଓଡ଼ିଆ ବ୍ରାହ୍ମଣଙ୍କୁ ଖାଇ । ବୋଇଲେ ଅତିବଡ଼ ତୁହି ॥
ଅଜ ପର୍ଯ୍ୟନ୍ତେ ସେବା କଲୁଁ । ସମସ୍ତେ ସାନପଦେ ଗଲୁଁ ॥
ଏହାଙ୍କ ସଙ୍ଗେ ଯେବେ ଥିବା । ଏତେ ନିନ୍ଦା ସିନା ଶୁଣିବା ॥
ଏତ ଈଶ୍ୱର ସର୍ବଠାରେ । ସର୍ବ କରନ୍ତି ବଚନରେ ॥

ଶ୍ଳୋକଃ ।

କର୍ତ୍ତା କର୍ତ୍ତୁଂ ଦ୍ୱୟୋଃକର୍ତ୍ତା କର୍ତ୍ତୃକାରଣ କାରଣଃ ।
ସର୍ବବ୍ୟାପୀ ଯଥାଦେବ ସ୍ରଷ୍ଟା କିଂଚିନ୍ତ୍ୟାମ୍ୟହଂ ।

ଈଶ୍ୱର ମହିମାଟି ଯେହି । ତହିଁର ପ୍ରତିଭାଷା ନାହିଁ ॥
କଲା କଥାହିଁ ନ କରନ୍ତି । ନ କଲା କଥାହିଁ କରନ୍ତି ॥
କାହିଁ କଲାକଥା ସ୍ଥାପନ୍ତି । କାହିଁ ନ କଲା ନ କରନ୍ତି ॥
କାହିଁ ମହାପାପୀ ତାରନ୍ତି । କାହିଁ ପୁଣ୍ୟବନ୍ତ ନାଶନ୍ତି ॥
ସକଳ ଦେହେଁ ଯହିଁ ଛନ୍ତି । ତେଣୁ ସର୍ବ ବଡ଼ ବୋଲନ୍ତି ॥
ପ୍ରତିଦିବସ ଶ୍ରୀ ଚୈତନ୍ୟ । ଡାକନ୍ତି ଅତିବଡ଼ ନାମ ॥
ଏମନ୍ତେ କେତେଦିନ ଗଲା । ଅତିବଡ଼ ନାମ କାଟିଲା ॥
ସହି ନ ପାରି ଭକ୍ତେ ଗଲେ । ପ୍ରଭୁଙ୍କ ଅଗ୍ରେ ଜଣାଇଲେ ॥

ଓଡ୍ର ବ୍ରାହ୍ମଣ ଅଣିଲ । ଯଡ଼ବଡ଼ ପଦ ଡାକିଲ ॥
ସର୍ବ ସେବକ ହେଲେ ସାନ । ତାହାର ଅଡ଼ବଡ଼ ନାମ ॥
ଅଜ୍ଞା ଦେଲେ ଶ୍ରୀ ଚୈତନ୍ୟ । ପୁରୁଷୋତ୍ତମ ବୋଲି ଚଣ୍ଡ ॥

ଶ୍ଲୋକଃ ।

ଅପି କୀଟପତଙ୍ଗାନାଂ କାଷ୍ଠପାଷାଣଶୁକ୍ତିତଃ ।
ଶ୍ରେଷ୍ଠୋଽଗ୍ରେ ଜାୟତେ ଭୂମୌ ମନୁଷ୍ୟେ କା କଥା ପୁନଃ ॥

ଏ କ୍ଷେତ୍ର ରଟେ କା ପାଷାଣ । ହିଙ୍କର କାଷ୍ଠ ବୋଲି ମାନ ॥
ଅନ୍ୟ ରାଜ୍ୟକୁ ସେ ଦେବତା । ମନୁଷ୍ୟେ ଭାଳ କେଉଁ କଥା ॥
ଏ ଯେଣ ଅଡ଼ବଡ଼ ବାଣୀ । ଦାସଙ୍କୁ ବଡ଼ ନୋହେ ପୁଣି ॥
ନର ନାରୀ ଯେତେ ଅଛନ୍ତି । ଅସାଧନେ ଭକ୍ତି ଲଭନ୍ତି ॥
ବଳେଣ ପ୍ରବେଶ ହୁଅଇ । ଆନ ରାଜ୍ୟେ ସାଧ୍ୟ ନୁହଇ ॥
ଏମନ୍ତ ପ୍ରଭୁ ମୁଖୁଁ ଶୁଣି । ସର୍ବ ବୈଷ୍ଣବେ ଦୁଃଖ ମଣି ॥
ବସ୍ତ୍ର କଲେ ନିଜ ଚିତ୍ତ । ଥିବାର ନୁହଇ ଉଚିତ ॥
ଏମନ୍ତ ସମସ୍ତ ଭାଳିଲେ । ପ୍ରଭୁଙ୍କ ସ୍ନେହ ଦୂର କଲେ ॥
ଛାଡ଼ିଲେ କ୍ଷେତ୍ରୋତ୍ତମ ଅଣ । ଅଡ଼ବଡ଼ ପଦେ ନିରଣ ॥
ପୁରୁଷୋତ୍ତମକୁ ଛାଡ଼ିଲେ । ଯାଜନଗ୍ରକୁ ବୋଲି ଗଲେ ॥
ରହିଲେ ଷଡ଼ମାସ ତହିଁ । ଏମନ୍ତେ ଚୈତନ୍ୟ ଗୋସାଇଁ ॥
ଷଡ଼ମୂର୍ତ୍ତି ବୈଷ୍ଣବ ଭୁଲେ । ପୁରୁଷୋତ୍ତମରେ ରହିଲେ ॥
ଜଗନ୍ନାଥଙ୍କୁ ଭଜୁଥାନ୍ତି । ସେବନେ ଅନ୍ୟ ନ ଜାଣନ୍ତି ॥
ଭକ୍ତବୃନ୍ଦଙ୍କ ସ୍ନେହ ଚିତ୍ତେ । ଦୟା ବହିଲେ ହୃଦଗତେ ॥
ବୈଷ୍ଣବେ ହରିଦାସ ନାମ । ସର୍ବ ମହତ ପ୍ରିୟତମ ॥
ତାଙ୍କୁ ପେଷିଲେ ଦୟାବନ୍ତ । ସର୍ବ ବୈଷ୍ଣବ ଅଣ ଯାଇଁ ॥
ପତ୍ରିକାରେ ଶ୍ଲୋକ ଲେଖିଲେ । ହରିଦାସଙ୍କ ହସ୍ତେ ଦେଲେ ॥

ଶ୍ଲୋକଃ ।

ତୃଣାଦପି ସୁନୀଚେନ ତରୋରପି ସହିଷ୍ଣୁନା ।
ଅମାନିନା ମାନଦେନ କୀର୍ତ୍ତନୀୟଃ ସଦାହରିଃ ॥

ଅଙ୍କରେ ହରିଦାସେ ଗଲେ । ଯାଜନଗରେ ପ୍ରବେଶ ହେଲେ ॥
ସମସ୍ତ ମାନ୍ୟମାନ କରି । ବସିଲେ ସଭାକୁ ବିସ୍ତାରି ॥
ସର୍ବ ମହନ୍ତ ସନମତେ । ପସିକା ଦେଲେକ ଅଗ୍ରତେ ॥
ଜଗଦାନନ୍ଦ ଚକ୍ରବର୍ତ୍ତୀ । ସଭାରେ ଶ୍ରୀମୁଖ ପଢ଼ନ୍ତି ॥
କୃଷ୍ଣଠାରୁ ଯାତ ହୋଇବ । ତରୁ ପ୍ରାୟେ ସର୍ବ ସହିବ ॥
ମାନ୍ୟରେ ଆନନ୍ଦ ନୋହିବ । ଅମାନ୍ୟେ ଦୁଃଖ ନ କରିବ ॥
ତେବେ ବୈଷ୍ଣବ ସିଦ୍ଧ ହୋଇ । ଭେଦରେ ଭକ୍ତି ନ ସଜାଇ ॥
ଶୁଣି ବୈଷ୍ଣବେ ତୋଷ ହୋଇ । ବୋଇଲେ ହରିଦାସେ ଘେନି ॥
ଅମ୍ଭରେ ସ୍ନେହ ଅଛି ଯେବେ । ଏଠାରୁ ଘେନଯାନ୍ତୁ ତେବେ ॥
ନ ଦେଖି ଚୈତନ୍ୟ ଚରଣ । ନ ଯିବୁ କ୍ଷେତ୍ରବରେ ପୁଣ ॥
ଶୁଣିଣ ହରିଦାସେ ଗଲେ । ପ୍ରଭୁଙ୍କୁ ଏ ଭାଷା କହିଲେ ॥
ଶୁଣିଣ ଚୈତନ୍ୟ ଗୋସାଇଁ । ଅତିବଡ଼ ଦାସଙ୍କ ସଇ ॥
ବୋଇଲେ ଯାଜପୁର ଯିବା । ସର୍ବ ବୈଷ୍ଣବଙ୍କୁ ଆଣିବା ॥
ଜଗନ୍ନାଥ ଦାସ ବୋଇଲେ । ମୋ-ଲାଗି ସର୍ବେ ରୁଷିଗଲେ ॥
ସେଠାକୁ ଯିବି ମୁଁ କେମନ୍ତେ । କ୍ରୋଧ ବହିବେ ତାଙ୍କ ଚିତ୍ତେ ॥
ଶୁଣିଣ ପ୍ରଭୁ ଆଜ୍ଞା କଲେ । ମିଶାଇ ଦେବତାଙ୍କ ତୁଲେ ॥
ଅମ୍ଭର ବଚନ ରହିବ । ତାଙ୍କ ତୁମ୍ଭର ପ୍ରୀତି ହେବ ॥
ଛତିଶ୍ରୀ ମୂର୍ତ୍ତି ବୈଷ୍ଣବ ତୁଲେ । ପ୍ରଭୁ ଯାଜନଗରକୁ ଗଲେ ॥
ମିଳଲେ ଯାଜନଗ୍ରେ ଯାଇଁ । ବୈଷ୍ଣବବୃନ୍ଦ ଛନ୍ତି ଯହିଁ ॥
ଶୁଣି ବୈଷ୍ଣବେ ତୋଷ ହେଲେ । କିଛି ଦୂର ପାଛୋଟି ଗଲେ ॥
ଅଗତ ସ୍ୱାଗତ ଭୋଜନ । ଏରୂପେ ଗଲା କିଛିଦିନ ॥
ଏକେକ ଚୈତନ୍ୟ ହରଷେ । ଡାକିଲେ ଅତିବଡ଼ ଦାସେ ॥
ପୂର୍ବ କଥା ତେଣୁ ଶୁଣିଲେ । ସର୍ବ ବୈଷ୍ଣବେ ଦୁଃଖ କଲେ ॥
ଯେଉଁ ଭାଷାକୁ ଏତେ ଦୂର । ଏବେ ବୋଇଲେ ଟେସ ଉତ୍ତର ॥
ପୁରୁଷୋତ୍ତମ ଯେବେ ଯିବା । ଏହି ଭାଷା ଦିନା ଶୁଣିବା ॥

ଓଡ଼ିଅ ସଙ୍ଗ ଛଡ଼ାଇବା । ଗଉଡ଼ ଦେଶେ ବୋଲି ଯିବା ॥
ବୋଇଲେ ଚୈତନ୍ୟଙ୍କୁ ସ୍ବହିଁ । ଯତଏକ ସତ୍ୟେ ନ ରହି ॥
ଗୟା ଗଙ୍ଗା ସାଗର ସ୍ନାନ । କର ହେ ତୀର୍ଥ ପର୍ଯ୍ୟଟନ ॥
ଏ ବାକ୍ୟ ଶୁଣି ଶ୍ରୀଚୈତନ୍ୟ । ଯେରୂପେ କହିଲେ ବଚନ ॥

ଶ୍ଲୋକଃ ।

ଇତଃ କୃଷ୍ଣେ ମତଃ କୃଷ୍ଣ ସର୍ବଙ୍ଗାତଟେ ତଟେ ।
ଜୀବତେ ମରଣେ ବାପି ନୀଳାଚଳପତିର୍ଗତିଃ ॥

ମୋହର ମନ ବୁଦ୍ଧି ଭାବେ । ଶରଣ ଜଗନ୍ନାଥ ଠାବେ ॥
ଜୀଅଇଁ ଅବା ମୁଁ ମରଇଁ । ଜଗନ୍ନାଥୁଁ ମୋ ଅନ୍ୟ ନାହିଁ ॥
ତୁମ୍ଭେ ବା ଦୁଃଖ କର ଚିତ୍ତ । ଏ ଅଟନ୍ତି ଜଗନ୍ନାଥ ॥
ମୋର ମୋଚନ ଅନ୍ୟ ନୋହି । ଅତ ବଡ଼କୁ ଯୋଗ୍ୟ ଏହି ॥
ଏ ବାକ୍ୟ ବୈଷ୍ଣବେ ଶୁଣିଲେ । ତହୁଁ ପ୍ରଭୁଙ୍କୁ ଛାଡ଼ ଗଲେ ॥
ବଣ ବିଷ୍ଣୁପୁରରେ ଯାଇଁ । ରହିଲେ ମଠ କରି ତହିଁ ॥
ପ୍ରଭୁ ଲେଉଟି ବିଜେ କଲେ । ପୁରୁଷୋତ୍ତମରେ ରହିଲେ ॥
ପୁଣିହିଁ ସମ୍ବତ୍ସର ଅନ୍ତେ । ସର୍ବ ବୈଷ୍ଣବେ ଶୁଦ୍ଧଚିତ୍ତେ ॥
ପୁରୁଷୋତ୍ତମ ଦରଶନ । ନୋହିବାରୁ ମନ ବିଚ୍ଛିନ୍ନ ॥
ଏକ ବୈଷ୍ଣବେକ ସଇଲେ । ପ୍ରଭୁଙ୍କୁ କହିବ ବୋଇଲେ ॥
ଷେହମାନଙ୍କୁ ଦରଶନ । ଷେହମାନଙ୍କରେ ସ୍ନାହାନ ॥
ଶୁଣିଣ ବୈଷ୍ଣବ ଚଳିଲେ । ପ୍ରଭୁଙ୍କୁ ଦଣ୍ଡବତ କଲେ ॥
ଦେଖି ପୁଚ୍ଛିଲେ ଶ୍ରୀ ଚୈତନ୍ୟ । କୁଶଳ ବୈଷ୍ଣବ ପ୍ରଧାନ ॥
ସେ ମାଧୋ ଦାସେ କହେ ବାଣୀ । ତୁମ୍ଭ ପାଦପ୍ରସାଦୁ ପୁଣି ॥
ସର୍ବ ମଙ୍ଗଳ ସର୍ବସିଦ୍ଧି । ଭକ୍ତି କରଛନ୍ତି ସଂସିଦ୍ଧି ॥
ଶୁଣି ଆନନ୍ଦ ପ୍ରଭୁ ହେଲେ । ପ୍ରେମାସ୍ପ ଅଶ୍ରୁଜଳ ଗଳେ ॥
ଏରୂପେ କିଛି ଦିନ ଅନ୍ତେ । ମାଧୋ ଦାସେ କହେ ଅଗ୍ରତେ ॥
କହୁଛନ୍ତି ବୈଷ୍ଣବଗଣ । ତୀର୍ଥକୁ କରିବ ଭ୍ରମଣ ॥

ଓଡ଼ଅ ରାଜ୍ୟରେ ରହିଲ । ଓଡ୍ରଅ କର୍ମ ଆଚରିଲ ॥
ଶୁଣି ବୋଇଲେ ଶ୍ରୀ ଚୈତନ୍ୟ । ବୈଷ୍ଣବେ ପ୍ରେମେ ଆଲିଙ୍ଗନ ॥
କହିବ ମାଧୋଦାସେ ଯାଇଁ । ଏ ପଦିକା ଦେବ ସେଠାଇଁ ॥

ଶ୍ଳୋକଃ ।

କାଶୀପୁର୍ଯ୍ୟମୁନାଂ ବିଲୋକ୍ୟ ମଧୁପୂଃସମ୍ପର୍କମୁଦ୍‌ବୀକ୍ଷିତେ ।
ଗଙ୍ଗାଦ୍ୱାରମଦର୍ଶୀ ନୈକପଦବୀନାମ୍ନାମଯୋଧ୍ୟା ପୁରୀଂ ।
କିନ୍ତୁ ଶ୍ରୀ ପୁରୁଷୋତ୍ତମେ ମୁରରିପୁମୂର୍ତ୍ତିଂ ଜଗନ୍ମୋହନୀଂ
ସ୍ମାରଂ ସ୍ମାରମହର୍ନିଶଂ ମମ ମନୋ କୁତ୍ରାପି ନୋ ତିଷ୍ଠତି ॥

ସେ ମାଧୋଦାସେ ଆଜ୍ଞା ନେଲେ । ବୈଷ୍ଣବ ମଣ୍ଡଳୀରେ ଦେଲେ ॥
ତହିଁରେ ଏହି ଲେଖା ହୋଇ । କାଶୀପୁର ଦେଖିଛି ମୁହିଁ ॥
ମଧୁପୁର ଗୋପନଗର । ବୃନ୍ଦାବନ ଦ୍ୱାରକା ପୁର ॥
ଗଙ୍ଗାଦ୍ୱାର ଗଙ୍ଗା ସଙ୍ଗମ । ଅଯୋଧ୍ୟା ବଦରିକା ଶ୍ରମ ॥
ଏଥିରେ ପୂର୍ବେ କୃଷ୍ଣ ଥିଲେ । ଯୁଗ ଅନ୍ତରେ ତା ଛାଡ଼ିଲେ ॥
ଛାଡ଼ି ସକଳ କ୍ଷେତ୍ର ତୀର୍ଥ । ନୀଳ କନ୍ଦରେ ଜଗନ୍ନାଥ ॥
ମୂର୍ତ୍ତିରେ ଜଗତକୁ ମୋହି । ତେଣୁ ଅକ୍ଷେତ୍ର କରିଛି ମୁହିଁ ॥
ଏଥିରେ ଥିବା ପରଯନ୍ତେ । ଏହା ନ ଛାଡ଼େଁ କଦାଚିତେ ॥
ଏକଥା ବୈଷ୍ଣବେ ଶୁଣି । ବିସ୍ମୟ କଲେ ସର୍ବେ ପୁଣି ॥
ବିସ୍ମୟ କଲ୍ ଅମୃ ଚିତ୍ତ । ଦୟା କରଣ ଶଚୀସୁତ ॥
ଅତବେହ ପଦ ଛଡ଼ାଇ । ପୁରୁଷୋତ୍ତମେ ନେବେ ସେହି ॥
ପୁରୁଷୋତ୍ତମ ତ ନ ଯିବା । କେହୁଁ ଅକ୍ଷେତ୍ର ଭକ୍ତି ପାଇବା ॥
ପୂର୍ବେ ଗୋବିନ୍ଦ ଲୀଳା ସ୍ଥାନ । ଗୁଲି ଯିବା ଶ୍ରୀ ବୃନ୍ଦାବନ ॥
ବେଦ ପୁରାଣେ ଏ ବଚନ । ତେଜ କଲେ ଅନ ବିଧାନ ॥
ପୁରୁଷୋତ୍ତମ ଯେତେ ସ୍ୱତ । ସେ କଥା କଲେ ଅନ ସ୍ୱତ ॥
ହରେ ରାମ କୃଷ୍ଣ ଛାଡ଼ିଲେ । ହରେ କୃଷ୍ଣ ରାମ ବୋଇଲେ ॥
ନିର୍ମାଲ୍ୟ ସେବା ଦୂର କଲେ । ବୃନ୍ଦାବନ ରଜ ଭାବିଲେ ॥

ଛାଡ଼ଣ ସମୁଦ୍ର ସ୍ନାହାନ । ଯମୁନା ଜଳେ ଦେଲେ ମନ ॥
ଛାଡ଼ଣ ଜଗନ୍ନାଥ ମୂର୍ତ୍ତି । ମଦନ ମୋହନେ ପୀରତି ॥
ହର ମନ୍ଦର ତ୍ୟାଗ କଲେ । କଳା ତଳକ୍କ ଅସ୍ୱଧିଲେ ॥
ଛାଡ଼ ପୁରୁଷୋତ୍ତମ ଅଣ । ବୃନ୍ଦାବନରେ କଲେ ବାସ ॥
ବଇଧ କର୍ମ ଦୂର କଲେ । ସ୍ୱଗ ମାର୍ଗେ କୃଷ୍ଣ ଭଜଲେ ॥
ବସ୍ତୁର କଲେ ତାଙ୍କ ମନ । ଭକ୍ତିରେ ବଶ ଭଗବାନ ॥
ଯେଣୁ ସେ ଭବବନ୍ଧ ହର । ଭ୍ରବଟେଲ ନଅନ୍ତ ଉଦ୍ଧର ॥
ଭକ୍ତ ଭାବେ ପ୍ରସନ୍ନ ହୋନ୍ତ । ଭାବେ ଦୁର୍ଲ୍ଲଭ ପଦ ଦ୍ୟନ୍ତ ॥
ଯହିଁ ବସେ ଭକତ ଜନ । ସେହୁ ଜାଣ ପୁରୁଷୋତ୍ତମ ॥
ଏମନ୍ତ ମନେ ବସ୍ତୁରଲେ । ବୃନ୍ଦାବନେ ନିବାସ କଲେ ॥
କ୍ଷେତ୍ରକୁ ପ୍ରଦକ୍ଷିଣ କର । ବୁଲନ୍ତ ଗୋବର୍ଦ୍ଧନ ଗିର ॥
ଯମୁନେ କରନ୍ତ ସ୍ନାହାନ । କଦମ୍ବ ବୃକ୍ଷ ଦରଶନ ॥
ଏମନ୍ତରେ ଷଡ଼ ଗୋସାଇଁ । ମହିମା ପ୍ରକାଶିଲା ତହିଁ ॥
ଏ କଥା ଶୁଣି ଶ୍ରୀ ଚୈତନ୍ୟ । ମଥୁର ଦାସଙ୍କୁ ସ୍ୱରଣ ॥
ବୋଇଲେ ଅଜ୍ଞା ଘେନଯିବ । ମଥୁର ଦାସଙ୍କୁ ଅଣିବ ॥
ମଥୁର ଦାସେ ଚଳଗଲେ । ବୃନ୍ଦାବନେ ପ୍ରବେଶ ହେଲେ ॥
କହଲେ ପ୍ରଭୁ ଅଜ୍ଞାମାନ । ଶୁଣିଣ ରୂପ ସନାତନ ॥
କୋଡ଼ିଏ ମୂର୍ତ୍ତି ସଙ୍ଗକଲେ । ଗୁଣ୍ଡିଚ୍ଚ ଯାହାକୁ ଅଇଲେ ॥
ଦେଖିଲେ ଚୈତନ୍ୟ ଗୋସାଇଁ । ରଥ ପେଲନ୍ତ ମୁଣ୍ଡ ଦେଇ ॥
ସେ କଲେ ଦଣ୍ଡବତମାନ । ପ୍ରଭୁହିଁ କଲେ ଅଲିଙ୍ଗନ ॥
ପ୍ରେମରେ ହୋଇ ଜର ଜର । ନ ଜାଣିଲେ ଅପଣା ପର ॥
ଅଦ୍ୱେୟଣ ପ୍ରଭୁ ନିତ୍ୟାନନ୍ଦ । ଶ୍ରୀ ସନାତନଙ୍କ ଅନନ୍ଦ ॥
ଶ୍ରୀ ରୂପଙ୍କ ଯେଉଁ ଗୋସାଇଁ । ଶ୍ରୀ ରଘୁନାଥ ଦାସେ ଥାଇଁ ॥
ଶ୍ରୀ ଜୀବେଙ୍କ ଯେଉଁ ଗୋସାଇଁ । ଶ୍ରୀ ଗୋପାଳ ଦାସେଣ ରହ ॥
ଏ ମୋକ୍ଷ ଷଡ଼ ବଇଷ୍ଣବ । ଅଧିକ କେ ତାହା ଲେଖିବ ॥

ଜଗନ୍ନାଥଙ୍କୁ ଦରଶନ । କରି ବୃନ୍ଦାବନ ଗମନ ॥
ପ୍ରତି ବରଷରେ ଅସନ୍ତି । ଗୁଣ୍ଡିଚ୍ଚ ଗହଣ ଖଟନ୍ତି ॥
ସାର ଗୁଣ୍ଡିଚ୍ଚ ଦରଶନ । ପୁଣି ବୃନ୍ଦାବନ ଗମନ ॥
ଅଦର କଲେ ଶ୍ରୀ ଚୈତନ୍ୟ । ସେ ତାହା ନ ଘେନଲେ ମନ ॥
ସେ ତାହା ନିକଟରେ ଥାଇ । ବଡ଼ ହେଲେ ସେ ନ ମାନଇ ॥
ବଟୁ ବୋଲିଣ ନ ମାନିଲା । ଶ୍ରୀବସ୍ତ ଚରଣ ମାଇଲା ॥
ଚୂଳ ଧର ପିଟିଲେ ନନ୍ଦ । ହେଉଁ ଗଲେ ଗୋପାଳବୃନ୍ଦ ॥
ଈଶ୍ୱର ସର୍ବ ସମ୍ଭାଳନ୍ତି । ଭକତେ କମ୍ମା ନ ବୋଲନ୍ତି ॥
ଭକ୍ତ ବୋଲନ୍ତି ଯାହା ଯହିଁ । ପ୍ରଭୁ ମିଳନ୍ତି ତାହା ତହିଁ ॥
ତାହାଙ୍କ ସଙ୍ଗେ ଶ୍ରୀ ଚୈତନ୍ୟ । କଛହିଁ ନ କହ ମଉନ ॥
ଅତିବଡ଼ ପଦେ ରୁଷିଲେ । ନେଉଟି ବୃନ୍ଦାବନ ଗଲେ ॥
ଏ ଶ୍ରୀ ଚଇତନ୍ୟ ଗୋସାଇଁ । ପୁରୁଷୋତ୍ତମେ ଥାନ୍ତି ରହି ॥
ହରେ ରାମକୃଷ୍ଣ ଭଜନ୍ତି । ଶ୍ରୀ ଜଗନ୍ନାଥେ କରି ପ୍ରୀତି ॥
ବୋଲଇ ବିପ୍ର ଦିବାକର । ଚୈତନ୍ୟ ପାଦେ ମୋର ଶିର ॥
ସେ ପ୍ରଭୁ ଭକ୍ତିର ସାଗର । ଭକ୍ତି ନାବେ କରିବେ ପାର ॥

ଇତି ଶ୍ରୀ ଜଗନ୍ନାଥାମୃତେ ଶ୍ରୀ ଅତିବଡ଼ ଜଗନ୍ନାଥ ଅନୁକ୍ରମଣି
ନାମ ତୃତୀୟୋଽଧ୍ୟାୟଃ ।



## ଚତୁର୍ଥ ଅଧ୍ୟାୟ ।

ଶୁଣ ସୁଜନେ ଦେଇ ମନ । ପ୍ରଭୁ ଚୈତନ୍ୟଙ୍କ ବିଧାନ ॥
ସ୍ୱାମିଙ୍କି ଘେନି ସଙ୍ଗତରେ । ସାର୍ବଭୌମକୁ ଭେଟ ହେଲେ ॥
ସେ ସାର୍ବଭୌମ ଭଟ୍ଟାଚାର୍ଯ୍ୟ । ବେଦ ବିଧାନେ ତାଙ୍କ କାର୍ଯ୍ୟ ॥
ହରି ଭକତି ନ ଜାଣନ୍ତି । ପଣ୍ଡିତପଣେ ଗର୍ବେ ଥାନ୍ତି ॥
ତାହାଙ୍କୁ ତାରିବାର ଆଶେ । ପ୍ରଭୁ ବସନ୍ତି ତାଙ୍କ ପାଶେ ॥

ସଙ୍ଗତେ ଜଗନ୍ନାଥ ଦାସେ । ଅଛନ୍ତି ଶୁଣିବାର ଆଶେ ॥
ଦେଖି ସାର୍ବଭୌମ ଆଇଲେ । ପ୍ରଭୁଙ୍କୁ ଦଣ୍ଡବତ କଲେ ॥

ଶ୍ଳୋକଃ ।

କୋଟିକଳ୍ପ ସୁଭାଗ୍ୟଶ୍ଚ ଦୁର୍ଲଭଂ ତବ ଦର୍ଶନଂ ।
ତବପାଦପଦାନୁଲେକ୍ଷା ବିଶୁଦ୍ଧାତ୍ମା ତତଃକ୍ଷଣାତ୍ ॥

କୋଟି କଳ୍ପର ଭାଗ୍ୟ ମୋର । ଦର୍ଶନ ଲଭିଲି ତୁମ୍ଭର ॥
ପୂର୍ବେ ମୁଁ ଯାହା ଶୁଣିଥିଲି । ବିଶୁଦ୍ଧ ଆତ୍ମା ମୁଁ ହୋଇଲି ॥

ଶ୍ଳୋକଃ ।

ଅମୋହରସଦ୍ରବ୍ୟଶ୍ଚ ଜଗନ୍ନାଥେଷୁ ଭୋଜୟେତ୍ ।
କିଂପାତେ ଅମୋହଂ ଦତ୍ତ୍ୱା ମହାପ୍ରସାଦଃ କଥଂ ଭବେତ୍ ॥

କୃଷ୍ଣ ପ୍ରେମତତ୍ତ୍ୱ ଲହରି । ସାର୍ବଭୌମ ଏହା ପଚାରି ॥
କି ଦ୍ରବ୍ୟ ଅମଣୋହା ହୋଇ । କେଉଁଣ ପାତ୍ରେଣ ପୂରାଇ ॥
କି ରୂପେ ମଣୋହି କରାଇ । ମହାପ୍ରସାଦ କେବେ ହୋଇ ॥

ଶ୍ଳୋକଃ ।

ଅମୋହରସ ଦ୍ରବ୍ୟଞ୍ଚ ଜଗନ୍ନାଥେଷୁ ଭୋଜୟେତ୍ ।
ବକ୍ତୁମେତତ୍ତଦସ୍ମୁନାଥ ତ୍ରିଲୋକଂ ରକ୍ଷ ରକ୍ଷକ ॥

ଅମଣୋହା ଯେ ରସ ଦ୍ରବ୍ୟ । ଜଗନ୍ନାଥେ କରନ୍ତି ଭୋଗ ॥
କୃପାରେ କହ ନାଥ ମୋତେ । ତ୍ରିଲୋକ୍ୟ ରଖିଛ ନିରତେ ॥
ଏମନ୍ତ ଶୁଣି ଶ୍ରୀଚୈତନ୍ୟ । ତାହାଙ୍କୁ କହନ୍ତି ବଚନ ॥

ଶ୍ଳୋକଃ ।

ଅମୋହଂ ସର୍ବକର୍ମଜ୍ଞଂ ଅମୋହଂ ବ୍ରହ୍ମଦୁର୍ଲଭଂ ।
ଗୁରୁଶିଷ୍ୟେବକ୍ତୃବେଣ ସାରଂ ତତ୍ବ୍ରହ୍ମବିଦ୍ୟା ॥

ହେ ସାର୍ବଭୌମ ତୁମ୍ଭେ ଶୁଣ । ଗୁରୁ ଶିଷ୍ୟଙ୍କ ବଚନେଣ ॥
ଅମଣୋହା ତାହାଙ୍କୁ କହ । ସ୍ୱୟଂ ବ୍ରହ୍ମସିଦ୍ଧ ଅଟଇ ॥

ଶ୍ଳୋକଃ ।

କ୍ଷେତ୍ରଂ ଶ୍ରୀପୁରୁଷୋତ୍ତମଂ ଅମୋଦଂ ତତ୍ର ଚୈବ ତ ।
ମହାପ୍ରସାଦ ଯତ୍ରୈବ କ୍ଷେତ୍ରେ ଶ୍ରୀପୁରୁଷୋତ୍ତମେ ॥

ଅମଣୋହା ମହାପ୍ରସାଦ । ଉତ୍ତମ କ୍ଷେତ୍ର ମୁକ୍ତିଭେଦ ॥
ଏ ସ୍ବର୍ଗକ୍ଷେତ୍ର ଅଛି ଏଥି । ଅନ୍ୟ କ୍ଷେତ୍ରେ ନ ପାଇ ସ୍ଥିତି ॥

ଶ୍ଳୋକଃ ।

ବଳଭଦ୍ରଃ ସୁଭଦ୍ରା ଚ ଜଗନ୍ନାଥଃ ସୁଦର୍ଶନଃ ।
ପ୍ରକାଶ ଶ୍ଚତୁର୍ଦ୍ଧାମୂର୍ତ୍ତ୍ୟା ଯାବତ୍ତନ୍ନ କଥା ବଦେତ୍ତୁ ।

ବଳଭଦ୍ର ସୁଭଦ୍ରା ଶୁଣ । ଜଗନ୍ନାଥ ଯେ ସୁଦର୍ଶନ ॥
ଏକ୍ଷେତ୍ରେ ଚତୁର୍ଦ୍ଧା ମୂରତ । ପ୍ରକାଶ ହୋଇଣ ଅଛନ୍ତି ॥
ଅମୋଦ ଯେଉଁ ନଇବେଦ୍ୟ । ଏ ଭାବେ ହୋଏ ସେ ପ୍ରସିଦ୍ଧ ॥

ଶ୍ଳୋକଃ ।

ଶ୍ରୀଁ ଶେଷଃ ପ୍ରକାଶୋଽସ୍ମିଂ ହ୍ରୀଁ ଭଦ୍ରେସ୍ମିଂ ତଥୈବ ଚ ।
କ୍ଳୀଁ କୃଷ୍ଣୋଜଗନ୍ନାଥସ୍ତ୍ରିଭିସ୍ତନ୍ନଂ ସୁଭୋଜୟେତ୍ତୁ ॥

ଶ୍ରୀ ବୀଜ ଶେଷଦେବ ହୋନ୍ତି । ହ୍ରୀ ବୀଜ ସୁଭଦ୍ରା ବୋଲନ୍ତି ॥
କ୍ଳୀ ବୀଜ ଜଗନ୍ନାଥ ଦେବ । ଏରୂପେ ନଇବେଦ୍ୟ ଭାବ ॥
ଯେବଣ ନୈବେଦ୍ୟ କରିବ । ଶ୍ରୀ ବଳଭଦ୍ରେ ସମର୍ପିବ ॥
ସେ ଦେବ ସୁଭଦ୍ରାଙ୍କ ପାଶେ । ସେ ଦେବ ପ୍ରଭୁଙ୍କ ଶ୍ରୀମୁଖେ ॥
ଯେରୂପେ ପ୍ରଭୁଙ୍କ ଅସ୍ବାଦ । ସେ ସବୁ ଏ ମହାପ୍ରସାଦ ॥

ଶ୍ଳୋକଃ ।

ତ୍ରିସ୍ବାଧରପାନେଷୁ କ୍ଳୀଁ ବ୍ରହ୍ମସ୍ତ ଭୋଜୟେତ୍ତୁ ।
ଏବଂ ପ୍ରେମ ନ ଜାନାତି ସସାଧୂଃ ସ ଚ ବୈଷ୍ଣବଃ ॥

ଏ ଭାବ ନଇବେଦ୍ୟ କର । ଶେଷ ଖାଇ ସଂସାରୁ ତର ॥
ଏ ଭାବେ ଜନ ନ ଜାଣନ୍ତି । ସାଧୁ ବଇଷ୍ଣବ ବୋଲନ୍ତି ॥
ଏ ଭାବ ବ୍ରହ୍ମାଙ୍କୁ ଦୁର୍ଲ୍ଲଭ । ହେ ସାଧୁଜନେ କର ଭାବ ॥
ପୁଣ ସାର୍ବଭୌମ ବୋଲନ୍ତି । କରୂପେ ହୋଏ ଏଥି ଭକ୍ତି ॥

ଶ୍ଳୋକଃ ।

ଭକ୍ତି ଭେଦଃ ବକ୍ତବ୍ୟଂ ଭକ୍ତିତତ୍ତ୍ୱମଶେଷତଃ ।
ଭକ୍ତି ଅଙ୍ଗଂ କୃପୟା ମେ କଥୟସ୍ୱ ମହାପ୍ରଭୋ ॥

କି ଭାବ ଭକ୍ତିକି ଲକ୍ଷଣ । ହେ ପ୍ରଭୁ ଆଜ୍ଞା ମୋତେ ଦେବା
ଶୁଣିଣ ଭକ୍ତର ବଚନ । ଆଜ୍ଞା ଦିଅନ୍ତି ଶ୍ରୀ ଚୈତନ୍ୟ ॥

ଶ୍ଳୋକଃ ।

ଭକ୍ଷାର୍ଥଂ ନବ ସଙ୍ଖ୍ୟ ମନ୍ତ୍ର ଯନ୍ତ୍ର ସ୍ୱରୂପକଂ ।
ଜଗନ୍ନାଥ ପରଂତତ୍ତ୍ୱ ମନ୍ତ୍ରବ୍ରହ୍ମ ପ୍ରଯୋଜିତଂ ॥

ଶିକ୍ଷା କରଣ ମନ୍ତ୍ରରାଜ । ଜଗନ୍ନାଥ ଶରୀର ଭଜ ॥
ମନ୍ତ୍ର ଯନ୍ତ୍ର ତନ୍ତ୍ରରେ ଭାବ । ଅଳ୍ପକେ ଭକ୍ତି ପ୍ରାପ୍ତି ହେବ ॥

ଶ୍ଳୋକଃ ।

ହରେର୍ନାମ ସଦା ଗାୟନ୍ କୃଷ୍ଣେ ମନ କଳ୍ପନା ।
ରତପ୍ରୀତ ତଥା ଶୃତ ଅସ୍ୱାଦନ ସୁଖଂ ସଦା ॥

ହରି ନାମ ଗାୟନ କର । କଳ୍ପନା କୃଷ୍ଣେ ପରହର ॥
ରତପ୍ରୀତ ଶୃତରେ ଭାବ । ମିଳିବ ଭକ୍ତି ସୁଖ ନାବ ॥

ଶ୍ଳୋକଃ ।

ପ୍ରେମାଙ୍ଗ ରାଧିକା ନାମ ମଧୁର ପ୍ରେମ ଭୂଷଣ ।
କ୍ଳୀଂ କୃଷ୍ଣ ସ୍ୱରସାତିଭୃତା ବୈଷ୍ଣବ ଲକ୍ଷଣଂ ବଦେତ୍ ॥

ରାଧିକା ମଧୁର ମୂରତି । ପ୍ରେମ ଅଙ୍ଗେ କୃଷ୍ଣରୂପ ସ୍ଥିତ ॥
ରାଧା କୃଷ୍ଣଙ୍କ ପ୍ରେମ ଜାଣି । ବୈଷ୍ଣବ ମଧ୍ୟେ ତାଙ୍କୁ ଗଣି ॥

ଶ୍ଳୋକଃ ।

ପରଂବ୍ରହ୍ମ ଜଗନ୍ନାଥ ଅବତାର ପରାତ୍ପରଂ ।
କୋଟ୍ୟାବତାରଂ-ଜନ୍ମ ଜନ୍ମେ ନିତ୍ୟସନ୍ଦେହ ମୁଚ୍ୟତେ ॥

ପରମ ବ୍ରହ୍ମ ଜଗନ୍ନାଥ । ସବୁରୁ ପରେ ପର ଏତ ॥
ଯେ କୋଟି କୋଟି ଅବତାର । ଜଗନ୍ନାଥ ଅଙ୍ଗୁ ବାହାର ॥

ଶ୍ଳୋକଃ ।

ସଖାଙ୍ଗେ ଉତ୍ତମା ଗୋପୀ ନାମସ୍ୟ ସଖିକା ଭବେତ୍ ।
ଏତତ୍ ଶ୍ରୀକୃଷ୍ଣେ ସଂଜାତଃ ବୃନ୍ଦାବନ ବିହାରଣଃ ॥

ଯେ ଜଗନ୍ନାଥ ଅଙ୍ଗୁ ଜାତ । ଗୋପେ ଗୋବିନ୍ଦ ଲୀଳାମୃତ ॥
ଏହି ତାଙ୍କଠୁଁ ଜାତ ହେଲେ । ବୃନ୍ଦାବନେ ବେହାର କଲେ ॥
ଏ ସଖା ସଖୀରୁ ସମ୍ଭୂତ । ବୃଷଭାନୁ ନନ୍ଦ ବିଖ୍ୟାତ ॥

ଶ୍ରୀଂ ପରେକାର ଶକ୍ତିଶ୍ଚ ହ୍ରୀଂ ସଖା ପରଙ୍କୀର୍ତ୍ତିତା ।
କ୍ଲୀଂ କୃଷ୍ଣ କାମବୀଜଶ୍ଚ ବାଲ୍ୟ ପୌଗଣ୍ଡ ଯୌବନଂ ॥

ଶ୍ରୀ-କାର ପଦ୍ମ ବୀଜ ହୋଇ । ହ୍ରୀକାର ରମା ବୀଜ କହି ॥
କ୍ଲୀଂର କାମବୀଜ ସାର । ବାଳକ ପୌଗଣ୍ଡ କିଶୋର ॥
ପଞ୍ଚଦଶ ଷୋଳ ବରଷ । ତିନି ରୂପର ଏ ବୟସ ॥
ଶ୍ରୀଂ ଯେ ପଦ୍ମ ବୀଜ ହୋଇ । ହର ନାମ ଅଛଇ ତହିଁ ॥
ହ୍ରୀଂ ଯେ ରମା ବୀଜ ଜାଣି । ସମ ନାମ ତହିଁ ବଖାଣି ॥
କ୍ଲୀଂ ଯେ କାମବୀଜ ହୋଇ । କୃଷ୍ଣ ବୋଲିଣ ଜାଣ ସେହି ॥
ରକ୍ତ ଶୁକଳ ଶ୍ୟାମବର୍ଣ୍ଣ । ତିନି ନାମ କର ପ୍ରମାଣ ॥

ଶ୍ଳୋକଃ ।

ମନ୍ତ୍ର ରୂପ ଜଗନ୍ନାଥ ଶେଷଦେବ ଶିରୋପରେ ।
ଯନ୍ତ୍ରସ୍ୟ ମନ୍ତ୍ରବୀଜସ୍ୟ ଷୋଡ଼ଶାକ୍ଷର ମନ୍ତ୍ରଯୁକ୍ ॥

ଏ ମନ୍ତ୍ର ରୂପି ଜଗନ୍ନାଥ । ଶେଷଦେବଙ୍କ ପରେ ସ୍ଥିତ ॥
ଯନ୍ତ୍ର ମନ୍ତ୍ର ଷୋଡ଼ଶାକ୍ଷର । ଏ ମନ୍ତ୍ର ସଙ୍କାର ବିସ୍ତର ॥

ଶ୍ଳୋକଃ ।

ଶ୍ରୀ ଜଗନ୍ନାଥ ଶରୀରେଚ ସଖା ଶ୍ୱେତ ଚନ୍ଦନା ।
ଶ୍ୱେତ ଲତା ସ୍ୱାମଧ୍ୟେଚ ଦୃଶ୍ୟତେ କୃଷ୍ଣ ସଖିକା ॥

ଏହି ଜଗନ୍ନାଥ ଅଙ୍ଗରେ । ସଖୀ ଅଛନ୍ତି ପ୍ରେମଭରେ ॥
ଲଗନ୍ତି ଶ୍ୱେତଲତା ପାଏ । ସଖୀ କୃଷ୍ଣଙ୍କ ଅଙ୍ଗେ ଯୋଡ଼େ ॥

ଶ୍ଳୋକଃ ।

ବର୍ତ୍ତନଂ ତଦ୍ଗୁଣଂ ଦୈବି ଅବକ୍ତଂ କୃଷ୍ଣ ରାଧୟୋଃ ।
ଅଦୃଷ୍ଟି ବ୍ରହ୍ମରୁଦସ୍ୟ ଚେତ୍କଥା ପରପୃଚ୍ଛତ ॥

ଅତ ତଦ୍ଗୁଣ ସୁ-ବର୍ତ୍ତନ । ରାଧା କୃଷ୍ଣଙ୍କର ବେଢର ॥
ଯେ ତତ୍ତ୍ୱ ଜୁଟମ୍ଭ ପଅରଲ । ବ୍ରହ୍ମା ରୁଦ୍ରଙ୍କୁ ଅଗୋଚର ॥

ଶ୍ଳୋକଃ ।

ନ ତଦ୍ଭାବେ କୃଷ୍ଣ ରାଧା ରସାବେଶୋ ଭବେତ୍ ସଦା ।
ଅନ୍ୟ ରାଧା ତଦ୍ଭାବଣ୍ଟ କୃପୟା ମେ ବଦପ୍ରଭୋ ॥

ରାଧାଙ୍କ ରସେ ସୁଖ ପାଇ । ସେ ଜଗନ୍ନାଥେ ବଶ ହୋଇ ॥
ଏଥୁ ଯେ ରାଧା କୃଷ୍ଣ ଜାତ । ସେ ଲୀଳା କରନ୍ତି ଜଗତ ॥

ଶ୍ଳୋକଃ ।

ପ୍ରେମାଙ୍ଗପ୍ରେ ଦ୍ରବ୍ୟ ଯଥା ସ୍ୱର୍ଣ୍ଣ ଚ ଦ୍ରବ୍ୟ ରୂପିଣୀ ।
ରାଧାଣ୍ୟୁ ନନ୍ଦବଜସ୍ୟ ଯନ୍ତ୍ର ସଃ । ସ୍ୱୟଂ ସ୍ଥିତା ॥

ରାଧା ପ୍ରେମଅଙ୍ଗ ଅଟନ୍ତି । ରାଧାଙ୍କ ସ୍ୱଦବ୍ୟ ବୋଲନ୍ତି ॥
ରାଧାଙ୍କ ମନ୍ତ୍ରରାଜ ହୋଇ । ଯନ୍ତ୍ର ସ୍ୱରୂପ ରାଧା ଵନ୍ଧୁ ॥

ଶ୍ଳୋକଃ ।

ରାଧଜା ସମ କୃଷ୍ଣାସ୍ଥ ରାଧାସ୍ତୁଂ ସାରମୁତ୍ତମଂ ।
ରାଧାସ୍ଥଂ ଭକ୍ତି ମୁକ୍ତି ଶ୍ଚ ରାଧାସ୍ଥଂ ସର୍ବ କାମସ୍ତୁ ॥

କୃଷ୍ଣ ସମାନ ରାଧା ମୂର୍ତ୍ତି । ରାଧାଙ୍କ ପରାପରେ ସ୍ତୁତି ॥
ଭକ୍ତି ମୁକ୍ତି ରାଧା ଦଅନ୍ତି । ସର୍ବ ବାଞ୍ଛା ପୂର୍ଣ୍ଣ କରନ୍ତି ॥

ଶ୍ଳୋକଃ ।

ରାଧାସ୍ଥଂ ମନ୍ତ୍ର ପୂଜାସ୍ଥଂ ପୂରଶ୍ଚରଣ ସାଧକା ।
ରାଧାସ୍ଥଂ କୋଟିଶଶ୍ଚ ନ ରାଧାସ୍ଥଂ ମନ୍ତ୍ର କୋଟି ତ ॥

ରାଧାଙ୍କ ମନ୍ତ୍ରେ ପୂଜା ପାନ୍ତି । ଅବାଦନେ ରାଧା ଅଛନ୍ତି ॥
ତଣ୍ଟ ଯପାର କୋଟି ହୋଇ । ରାଧାଙ୍କ ଦୃଷ୍ଟିରୁ ଜନ୍ମନ୍ତି ॥

ଶ୍ଳୋକଃ ।

ସ୍ୱାଧା ସ୍ୱୟଂ ଜଗନ୍ନାଥ ସ୍ୱର୍ଦ୍ଧିକା ସ୍ତୁପ ରୂପିଣୀ ।
ସ୍ୱଧିକା ପ୍ରକୃତେଃ ପାରଂ ସ୍ୱଧିକା ଶେଷ ମୂର୍ତ୍ତିନ ॥

ସ୍ୱଧାନ୍ତି ସ୍ୱୟଂ ଜଗନ୍ନାଥ । ସ୍ୱଧାନ୍ତି ସୁଭଦ୍ରରୂପେ ସ୍ଥିତ ॥
ସ୍ୱଧାନ୍ତ ନୃତ୍ୟକ ଦାର । ସ୍ୱଧାନ୍ତି ଶେଷଦେବ ଶିର ॥
ଏରୂପେ ସଧାଙ୍କ ମହିମା । କହିଲେ ଗରୁ ବିଶ୍ୱକର୍ମା ॥
ସଧା ଅଟନ୍ତି ଭକ୍ତିଦାୟୀ । ସଧା ବୋଲିଲେ ଭକ୍ତି ହୋଇ
ଯାହାରେ ବଶ ଜଗନ୍ନାଥ । ଯାହାରୁ ହୋଇଛି ଜଗତ ॥
ବିଶ୍ୱ ଯଥାର ସୃଷ୍ଟି ହେତେ । ଯାହାରୁ ଜାତ ଏ ସମସ୍ତେ ॥

ଶ୍ଳୋକଃ ।

ବ୍ରହ୍ମା ବିଷ୍ଣୁ ମହେଶ୍ୱ ଇନ୍ଦ୍ରାଦିଶ୍ଚ ଦେବତା ।
ରାମାଦି ଅବତାରଶ୍ଚ ଜଗନ୍ନାଥ ଅବତାରିକା ॥

ଏ ବ୍ରହ୍ମା ବିଷ୍ଣୁ ମହେଶ୍ୱର । ଇନ୍ଦ୍ରାଦି ଦଶଦିଗପାଳ ॥
ଯେତେକ ଦେବଗଣମାନ । ଯେତେକ ପୂଜା ଅବସ୍ଥାନ ॥
ରାମାଦି ଯେତେ ଅବତାର । ପୁରୁଷୋତ୍ତମ ତାଙ୍କ ଘର ॥
ଏ ମନ୍ତ୍ରରାଜ ଷୋଳଅକ୍ଷର । ଜଗନ୍ନାଥ ଅଙ୍ଗ ବାହାର ॥
ଅଦେଶ ତିନ ସଜ ହୋଇ । ତ୍ରିଭୁବନେ ଛଡ଼ସାଜ କହି ॥
ଯେମନ୍ତେ ମନ୍ତ୍ରରାଜ ହୋଇ । ସାକ୍ଷାତେ ଜଗନ୍ନାଥ ଏହି ॥
ପୁଣି କହନ୍ତି ଶ୍ରୀ ଚୈତନ୍ୟ । ଏବେ ହେ ହରିନାମ ଶୁଣ ॥

ଶ୍ଳୋକଃ ।

ହରେ ରାମ କୃଷ୍ଣ ମନ୍ତ୍ର ସର୍ବମନ୍ତ୍ରେଣ ଦୁର୍ଲ୍ଲଭଂ ।
ମହାମନ୍ତ୍ରଂ ତନ୍ତ୍ରେଜାପି ବାଞ୍ଛିତଂ ସର୍ବସିଦ୍ଧିଦଂ । ୦ ।

ଏ ମନ୍ତ୍ରରାଜ ହରିନାମ । ଏ ବେନି ବାଞ୍ଛାସିଦ୍ଧି କାମ ॥
ହରିନାମ ଯାହାକୁ କହି । ସର୍ବମନ୍ତ୍ର ଦୁର୍ଲ୍ଲଭ ଏହି ॥

ଶ୍ଳୋକଃ ।

ଷୋଡଶାକ୍ଷର ମନ୍ତ୍ରବୀଜ ଉପଦେଶଂ କୃପା କୁରୁ ।
ମନ୍ତ୍ରବୀଜ ତସ୍ମାନସ୍ୟ ଅନ୍ୟ ଭକ୍ତି ନହି ନହି ॥

ତୁମ୍ଭେ ହୋ ମୋର ଦୟାକର । ମନ୍ତ୍ରବୀଜକୁ କଣ୍ଠେ ଧର ॥
ଏମନ୍ତ ହେଲେ ଉପଦେଶ । ସମସ୍ତ କାମ କରିବ ନାଶ ॥
ସମସ୍ତ ଭକ୍ତି ଉଦେ ହେବ । ଅନ୍ତେ ଚରଣ ସେବା ଲଭ ॥
ଏ ମନ୍ତ୍ର ବିନେ ଅନ୍ୟ ଗତି । କେବେହେଁ ନ ଲଭେ ଭକତି ॥
ଯେ ମନ୍ତ୍ରବୀଜ ଜଗନ୍ନାଥ । ହରେ ରାମକୃଷ୍ଣ ସେ ତତ୍ତ୍ୱ ॥
ବାଳମୁକୁନ୍ଦ ରୂପ ଯେହୁ । ଗୋପାଳ ମନ୍ତ୍ର ସେ ଅଟଇ ॥
ଶ୍ରୀ ମନ୍ତ୍ରବୀଜ ଉପଦେଶେ । ଯଦ୍ୟପି କରନ୍ତି ମନୁଷ୍ୟେ ॥
ବ୍ରହ୍ମ ଦୁର୍ଲ୍ଲଭ ଭକ୍ତିମାନ । ତକ୍ଷଣେ ଲଭନ୍ତି ଯେସନ ॥
ପଞ୍ଚତତ୍ତ୍ୱ ଜୀବଠାରେ । ହେବେ ଶୁଭଳ ଦଳବରେ ॥
ବଳେ ଭକ୍ତି ତାର ବଢ଼ଇ । ଅନ୍ତେ ପରମ ଗତି ପାଇ ॥
ବାହ୍ୟ ଆତ୍ମା ପଶୁ ବାନର । ଭିନ୍ନ ଆତ୍ମା ଅର୍ଦ୍ଧମାତର ॥
ପ୍ରଧାନ ଆତ୍ମା ଯାହା କହୁ । ଶ୍ରୀ ଜଗନ୍ନାଥ ଅଙ୍ଗ ସେହୁ ॥
ଏ ପରଆତ୍ମା ଜଗନ୍ନାଥ । ଏହୁଟି ବୋଲି ପରତତ୍ତ୍ୱ ॥
ମନ୍ତ୍ରବୀଜର ଏ ତତ୍ତ୍ୱର । ହରିନାମ ଏହୁ ପ୍ରକାର ॥
ଜୀବାତ୍ମା ହରିନାମ ହୋଇ । ଅନ୍ତର ଆତ୍ମା ରାମ କହି ॥
ପରମ ଆତ୍ମା କୃଷ୍ଣ କହୁ । ହରେ ବାହ୍ୟ ଆତ୍ମା ଅଟଇ ॥
ପ୍ରଧାନ ଆତ୍ମା ଯାହା କହୁ । ମନ୍ତ୍ର ଓଁକାର ରୂପ ଦେହୁ ॥
ପଞ୍ଚାଶକୋଟି ମହା ସ୍ୱର । ଅଛନ୍ତି ଅନନ୍ତଙ୍କ ଶିର ॥
ତହିଁ ମଧ୍ୟରେ ପଞ୍ଚକୋଷ । ପୁରୁଷୋତ୍ତମ ଭକ୍ତି ବାସ ॥
ଧର୍ମାର୍ଥ କାମ ମୋକ୍ଷମାନ । ଦିଅନ୍ତି ଦେଇ ପୁରୁଷୋତ୍ତମ ॥
ଭକ୍ତି ମୁକ୍ତି କି ଯେ ବାଞ୍ଛା । ପ୍ରାଣୀକି ବଳେ ଦିଅ ହୋଇ ॥
ଧର୍ମ ଅର୍ଥ କାମ ମୋକ୍ଷର । ନ ମାଗୁ ଦିଅନ୍ତି ଏ ପ୍ରବର ॥

ଏ ଅନ୍ୟେ ସିଦ୍ଧିମାନ ଯେତେ । ବସେ ନାଥଙ୍କ ପାଦଗତେ ॥
ବୋଲନ୍ତି ମୋ ପାଦରେ ଥିବୁ । ପୁରୁଷୋତ୍ତମେ ସିଦ୍ଧି ହେବୁ ॥

ଶ୍ଲୋକଃ ।

ପୁରୁଷୋତ୍ତମ ସ୍ଥାପ୍ୟ ଚ ପୁଣ୍ୟବ୍ୟାଂକ୍ଷେତ୍ରବାସିନୀ ।
ମଥୁରା ଦ୍ୱାରକାଽଯୋଧ୍ୟା କାଶୀ ବୃନ୍ଦାବନଂ ତଥା ॥

ପୁରୁଷୋତ୍ତମରେ ଯେ ସ୍ଥଳ । କ୍ଷେତ୍ରେ ଜନ୍ମିଲେ ଚଣ୍ଡପାଳ ॥
ଏ କ୍ଷେତ୍ରଠାରୁ ଜନ୍ମ ହୋଇ । ଶ୍ରେଷ୍ଠ ପୂଜା ଲଭିଲେ ମହୀ ॥
ମଥୁରା ଦ୍ୱାରକା ଯେ କାଶୀ । ଅଯୋଧ୍ୟା ବୃନ୍ଦାବନ ମିଶି ॥

ଶ୍ଲୋକଃ ।

କଳ୍ପବୃକ୍ଷୋତ୍ତର ପାଶେ ଶ୍ରୀ ଜଗନ୍ନାଥ ସେବିତ ।
ମଧ୍ୟକ୍ଷେତ୍ରେ ପ୍ରବେଶନ୍ତି ଭକ୍ତିମୁକ୍ତିଂ ଲଭେତ ହି ॥

କଳପ ବୃକ୍ଷ ଜଗନ୍ନାଥ । ମଧ୍ୟେ ପ୍ରବେଶ ଯେଉଁ ଭକ୍ତ ॥
ଜାଣି ନ ଜାଣି ପଶିଗଲେ । ଭକ୍ତି ପ୍ରବେଶ ତାଙ୍କ ଭୁଲେ ॥
ଅଜ୍ଞାନ ପ୍ରେମଭକ୍ତି ପାଇ । ଜ୍ଞାନ ସର୍ବଭକ୍ତି ଲଭଇ ॥
ଏ ସର୍ବଗୁଣେ ପରେ ତାର । ସର୍ବ କ୍ଷେତ୍ରଙ୍କର ଈଶ୍ୱର ॥
ବ୍ରହ୍ମା ଜାଣନ୍ତି ଶିବ ଯେଣୁ । ଏ ପୁର ଭଜୁଥାନ୍ତି ତେଣୁ ॥
ବ୍ୟାସ ନାରଦ ଅଜ ଯେତେ । ଏ ପୁର ଭାବୁଥାନ୍ତି ନିତ୍ୟେ ॥
ଏ ଭାବ ଯେହୁ ନ ଘେନଇ । ଜାଣିବ ପଶୁ ଜନ୍ମ ସେହୁ ॥
ଯାହାର ନାମ ଶତବାଞ୍ଛା । ଏ ପୁର ସ୍ଥିତ ଅନେକ ଇଚ୍ଛା ॥
ଜାଣିବ ବିଧାତା ତାହାକୁ । ରଖିଲ ଅମର ଜନ୍ମକୁ ॥
ମୁଁ ସ୍ଥିତ ସର୍ବକ୍ଷେତ୍ର ତୀର୍ଥ । ଅଶେଷ ପୁରୁଷୋତ୍ତମ କ୍ଷେତ୍ର ॥
ଯେ ମହାମୂର୍ତ୍ତେ ମୁକ୍ତ ହେବ । ଏ କ୍ଷେତ୍ର ସ୍ଥିତ ଅନନ୍ୟ ଥିବ ॥
ପୁଣ୍ୟ ଅଛି ଯେତେ ତୀର୍ଥ । ସମୁଦ୍ରେ ରହନ୍ତି ସମସ୍ତ ॥
ସକଳ ଗୁଣି ସିଦ୍ଧିମାନ । ଜମ୍ବେଶ୍ୱର ଛନ୍ତି ଯେଉଁଣ ॥
ସର୍ବ ବେଦବାଦ୍ୟା ପ୍ରବେଶ । ବଟତଳେ ଛନ୍ତି ଗଣେଶ ॥

ସକଳ ସ୍ମୃତ ବାକ୍ୟଁ ଯେହ | ସରସ୍ୱତୀ ଅଛନ୍ତି ପୁଣି ||
ଦୁଇ ବେଦନାକୁ ବୃଦାଣ | ଡମଳାକ୍ଷୀ ସେ ଅଧିକାରୀ ||
ସକଳ ଅଇଶ୍ୱର୍ଯ୍ୟ ଯେଣ | ଅଛନ୍ତି ତରୁଣ ନନ୍ଦନ |
ଚତୁର୍ବର୍ଗ ଯେଣ ଫଳ | ଯହିଁରେ ଦାରୁ କଳେବର ||
ଯେ ପ୍ରାଣୀ ଯୁବୁଙ୍କି ହୋଇବ | ଅନ୍ୟ ଷେତ୍ରକୁ କେଁ। ଯିବ ||
ବଧାତା ଯେବେ ସାହାଟେ | ସେ ଭୂଲେ ସଂସାର ସାଗରେ ||
ସାଙ୍ଗ ଭୌମଙ୍କର ଅଗ୍ରେଣ | କହିଲେ ପ୍ରଭୁ ଚଇତନ୍ୟ ||
କୃଷ୍ଣ ପ୍ରେମକୁ ଲଭସ | ପ୍ରଭୁ ଶ୍ରୀମୁଖେ ଅଙ୍ଗିକର |
ଶୁଣିଲେ ବୈଷ୍ଣବ ସମସ୍ତ | ଥିଲେ ଯେ ଦାସ ଜଗନ୍ନାଥେ ||
ପ୍ରଭୁଙ୍କ ଶ୍ରୀମୁଖୁ ଶୁଣିଲେ | କୁଟଦ ଏହି ପଦ ଶୁଣିଲେ ||
ବୋଲଇ ଦ୍ୱିଜ ଦିବାକର | ଚୈତନ୍ୟ ପାଦେ ଦେଇ ଶିର ||
ଦଣ୍ଡିତେ ନ ଘେନମା ଦୋଷ | ମୁଁ ତୁମ୍ଭ ଦାସଙ୍କର ଦାସ |

ଇତି ଶ୍ରୀ ଜଗନ୍ନାଥାମୃତେ ଶ୍ରୀ ଅତିବଡ଼ ଜଗନ୍ନାଥ ଗୋସାଇଁ
ଅନୁକ୍ରମଣି ନାମ ଚତୁର୍ଥୋଽଧ୍ୟାୟଃ ।



# ପଞ୍ଚମ ଅଧ୍ୟାୟ ।

ଶୁଣ ସୁଜନେ ଦେଇ ଚିତ୍ତ | କହିବି ଜଗନ୍ନାଥାମୃତ ||
ଖଳ ନିନ୍ଦକଙ୍କ ଡରେ ମୁହିଁ | ଦୁନ୍ତରେ ଅଳପ ଲେଖଇ ||
କରନ୍ତି ବସ୍ତାର ବର୍ଣ୍ଣନ | ଗ୍ରନ୍ଥ ବଢ଼ିବ ଭୟମାନ |
ଟମା ନାମ ବିପ୍ର ଦିବାକର | ନାମ ଦେବ ପିତା ମୋହର ||
ଜଗୁ ଦାସ ମୋ ପିତୃ ପିତା | ନନ୍ଦଦାସେ ତାହାଙ୍କ ପିତା ||
ତାଙ୍କର ପିତା ବାଇଧର | ଟମ୍ପା ନାମେ ମାତା ମୋହର ||
ଭରଦ୍ୱାଜ ଗୋତ୍ର ମୋହର | ବୃହସ୍ପତ୍ୟଙ୍ଗିସ ପ୍ରବର |
କେବଳ ଜଗନ୍ନାଥ ଭଜେ | ଅନ୍ୟ ନ ରୁଚେ ମୋର ମନେ ||

ଶ୍ଳୋକଃ ।

ନତ୍ତୁ ବୃନ୍ଦାରଣ୍ୟଂ ନ ଗୋବର୍ଦ୍ଧନଗିରି କୁଞ୍ଜ ସଦନଂ
ନଯୋଧ୍ୟା ଦ୍ୱାରକା ନଚିତ୍ରକୂଟ କାଶୀ ମଧୁପୁରୀ ।
ନ କୁରୁ ପୁଷ୍କରଞ୍ଚ ନ ଧରା ସ୍ଥଳୀ ବା କ୍ଷେତ୍ରମୁତ୍ତମ
ଜଗନ୍ନାଥ ଚାରଣଂ ମମ ହୃଦ ପୁରୁଷୋତ୍ତମ ବସତି ।।

ଅଦ୍ୟେ ଲେଖିଲ କ୍ଷେତ୍ର ଯେତେ । ଯେ ମୋର ନ ରହଇ ଚିତ୍ତେ
ପୁଣି ଲେଖିଲ ବେଦମାନ । ତହିଁ ମୋ ନ ରସଇ ମନ ।।
ଏକା ଜଗନ୍ନାଥଙ୍କୁ ମୁହିଁ । ସର୍ବତୋ ଭାବରେ ଭଜଇ ।।
ଶରଣଗଲ ଶ୍ରୀପଦ୍ମର । ସର୍ବ ଭଜନ ସେ ମୋହର ।।
ଭକ୍ତି ଗ୍ରନ୍ଥକୁ ବାଞ୍ଛା କଲ । ଶ୍ଳୋକାଭାଷ ଗ୍ରନ୍ଥ ଲେଖିଲ ।।
ମୋର ଭରସା ଯେ ଶ୍ୟନାଥ । ବେଳକୁ ଅଛ ଶ୍ଳୋକ ହୋଇ
ସେ ଶ୍ଳୋକ କରଅଛ ଅର୍ଥ । ପଦ୍ୟକର ଲେଖିଲି ଗ୍ରନ୍ଥ ।।
ପୂର୍ବେ ଯେତେ ଗୋସାଇଁ ସର୍ବେ । ଯେତେଣ ଅଛନ୍ତି ଗ୍ରନ୍ଥ କରି ।।
ସେ ଗ୍ରନ୍ଥ ଟିକ ଠିକ କରି । ଲେଖିଲି ଭାବ ଅନୁସରି ।।
ମୁହିଁ ଏବେ ଯୋଗୀଃ ନ ହୋଇ । ଶ୍ରୀ ଜଗନ୍ନାଥେ ଦ୍ୟନ୍ତ କରି ।।
ଯେ ନାମ ବାଞ୍ଛା କଳ୍ପତରୁ । ଭକତ ଜନ ଅଶା ମେରୁ ।।
ତାହାଙ୍କ ଅଜ୍ଞା ପାଇ ମୁହିଁ । ଭକ୍ତି ସମ୍ଭବେ, ପଢିଲଇଁ ।।
ସାର୍ବଭୌମଙ୍କୁ ଭକ୍ତି କହି । ଯେହୁ ଯେ ଚୈତନ୍ୟ ଗୋସାଇଁ ।।
ଚୌବିଂଶ ବର୍ଷ ପରଯନ୍ତେ । କ୍ଷେତ୍ରରେ ରହିଲେ ନିଶ୍ଚିନ୍ତେ ।।
ସେକାଳେ ବଳୀସ୍ତ ଜଣେ । ଥିଲେ ଯେ ପ୍ରଭୁଙ୍କ ସଦନେ ।।
ଏକ ଦିନରେ ରତ୍ୟାନନ୍ଦେ । ପ୍ରଭୁଙ୍କୁ ପୁଛିଲେ ଅନନ୍ଦେ ।।

ଶ୍ଳୋକଃ ।

ହରେ ସମାଦିକଂ ପଞ୍ଚ ମନ୍ତ୍ରସାର ଫଳପ୍ରଦଃ ।
ସର୍ବେଷାଂ ବାଞ୍ଛିତଂ ଦଦ୍ୟାତ୍ ଦୃଷ୍ଟ ସାଯୁଜ୍ୟ ଦାୟକଂ ।।

ହରେ ସମ କୃଷ୍ଣ ମନ୍ତ୍ରରେ । ଚତୁର୍ଦ୍ଧେ କବଚ ଅଙ୍ଗରେ ।

ଯେବେ ଶୁଣିତ ଯୋଗ୍ୟ ମୁହିଁ । ଅନନ୍ତେ ପ୍ରଭୁ ଆଜ୍ଞା ହେଉ ॥
ଏ ବାକ୍ୟ ଶୁଣି ଶ୍ରୀ ଚୈତନ୍ୟ । ଅନନ୍ତେ କହନ୍ତି ବଚନ ॥

ଶ୍ଲୋକଃ ।

ତଚ୍ଛ୍ରୁତ୍ୱା ତୁ ମହାଦେବ ବ୍ରହ୍ମାଦ୍ୟ ସୁରସତ୍ତମଃ ।
ସ୍ୱଦେହର୍ଯ୍ୟକ୍ତି ଯୁକ୍ତ୍ୱା ଯଃ ସର୍ବୈଶ୍ୱର୍ଯ୍ୟ ମହାତ୍ମ୍ୟଯୁକ୍ ॥
ହେ ନିତ୍ୟାନନ୍ଦ ତୁମ୍ଭେ ଶୁଣ । ବ୍ରହ୍ମାଦି ଦେବେ ଏ ଉତ୍ତମ ॥

ଶ୍ଲୋକଃ ।

ହକାରେ ନାସିକା ପାତୁ ରେଫରେ ବଦନନ୍ତଥା ।
ଈକାରସ୍ତୁଷ୍ଟଂ ମଧ୍ୟେଣ ମକାର ସ୍ତନମଧ୍ୟକଃ ॥
ଔକାରୌ ଚ ଭ୍ରୁବୋର୍ମଧ୍ୟେ ଙ୍କାର ସ୍ତୁ ଚୂଡ଼କାସ୍ତଥା ।
ବ୍ରହ୍ମା ମହେଶ ଇନ୍ଦ୍ର ମୁଖେ । ଯେତେ ବା ଛନ୍ତି ଦିଗପାଳେ ॥
ହରି ନାମକୁ ଅନେ କରି । ଐଶ୍ୱର୍ଯ୍ୟ ଅଛନ୍ତି ଅବୋରି ॥
ହଅ ଅକ୍ଷର ଶିବେ ଦେବ । ରେ ସ୍ୱର ମୁଖରେ ଥୋଇବ ॥
ସଷର ଚକ୍ଷୁରେଣ ଥୋଇ । ମକାର ସ୍ତନମଧ୍ୟେ ଦେଇ ॥
ଊକାର ଭ୍ରୁରୁମଧ୍ୟେ ସ୍ଥିତ । ଙ୍କାର ଚୂଡ଼ରେ କହନ୍ତି ॥

ଶ୍ଲୋକଃ ।

ଶିରସ୍ତୁ ଲଳିତା ପାତୁ ବିଶାଖା ଦକ୍ଷିଣଂ ଭୁଜଂ
କଣ୍ଠଂ ଚ ଚମ୍ପକଲତା ଚିତ୍ରା ବାମଭୁଜନ୍ତଥା ।
ପାର୍ଶ୍ୱଦ୍ୱୟଂ ରଙ୍ଗଦେବୀ ସୁଦେବୀ ପାତୁ ମୂର୍ଦ୍ଧନୀଂ ।
ବଦନଂ ତୁଙ୍ଗବିଦ୍ୟା ଚ ଶ୍ରବଣଂ ଚେନ୍ଦୁଲେଖିକା ।
ଶଶିରେଖା ଭ୍ରୁବୋର୍ମଧ୍ୟେ ଦକ୍ଷିଣେ କମଳାସ୍ତଥା
ଭାଲଂ ଚ ପାଳିକା ପାତୁ ବକ୍ଷସ୍ଥାନଂ ମଞ୍ଜିଷ୍ଠା
ଶ୍ୟାମଳା ନାଭିମଧ୍ୟନ୍ତୁ ମଧ୍ୟଂ ମଧୁମତୀ ତଥା ।
ଧନ୍ୟା କସ୍ତୁଳୀ ପାତୁ ମଙ୍ଗଳାର୍ଦ୍ଧଂ ସଦାବତୁ ।
ଶ୍ରୀଦାମା ଜଘନଂ ପାତୁ ସୁଦାମା ଊରୁଯୁଗ୍ମ ଚ ।

ବସୁଦାମା ଜାନୁଯୁଗ୍ମଂ ଜଙ୍ଘଂ ପାତୁ ସଖାର୍ଜ୍ଜୁନଃ ,
ସୁବଲୋ ଦକ୍ଷିଣଂ ପାତୁ ପାଦବାମେୈକ କିଙ୍କିଣୀ ।
ପ୍ରାଚୀ ଦକ୍ଷସ୍ତ୍ରାକକୃଷ୍ଣଃ ବାହ୍ଣଂ ପାତୁ ବରୁଣ୍ଣମା ॥

ଲଳତା ରଖୁ ମୋର ଶିର । ଦଣ୍ଡକୁ ଯେନ ସଙ୍ଗେ ତାର ॥
ବିଶାଖା ରଖୁ ଭ୍ରୂଯୁଗଳ । ରେକାର ସଙ୍ଗେ ଯେନ ସେହ ॥
ଚମ୍ପକଲତା କଣ୍ଠ ରଖୁ । ସ୍ୱଅ ଅକ୍ଷର ସଙ୍ଗେ ଯୋଖୁ ॥
ଛତା ରଖିବ ବାମ ମୋର । ମଥାକୁ ଯେନ ସଙ୍ଗତର ॥
ପାକଶଙ୍ଖ ଯେ ରଙ୍ଗ ଦେବୀ । ସଙ୍ଗତେ ଯେନଣ ସୁଦେବୀ ॥
ଦରେସ ଏ ଢେ ଅକ୍ଷର । ରଖନ୍ତୁ ମସ୍ତକ ମୋହର ॥
ବଦନ ତୁଙ୍ଗବିଦ୍ୟା ରଖୁ । ମ-ଅକ୍ଷର ସଙ୍ଗରେ ଯୋଖୁ ॥
ଶ୍ରବଣ ରଖୁ ଇନ୍ଦୁରେଖା । ସ୍ୱ-ଅକ୍ଷର ସଙ୍ଗେ ଯୋଖା ॥
ଶଶିରେଖା ଯେ ମ-ଅକ୍ଷର । କପାଳ ମଧ୍ୟ ରଖୁ ମୋର ॥
ଦକ୍ଷିଣ ଭ୍ରୁରୁ ସ୍ଥାନ ଦୁଇ । ବିହିଲ ସ୍ୱଅ ସଙ୍ଗେ ରହି ॥
ଭ୍ରଲରେ ପାଳକା ମୋ ରହୁ । ମଅ-ଅକ୍ଷର ସଙ୍ଗେ ଥାଉ ॥
ବକ୍ଷରେ ଅନଙ୍ଗମଞ୍ଜରୀ । ହଅକୁ ଯେନ ରଜା କରି ॥
ମକାର ନାଭି ରକ୍ଷା କରୁ । ରେଏକୁ ଯେନ ସଙ୍ଗେ କରୁ ॥
ମଦନଗ୍ରା ମଧ୍ୟ ଲୁଗର । ରଖନ୍ତୁ ଯେଣ ହ-କାର ॥
ଧନ୍ୟକର ଅଙ୍ଗୁଷ୍ଠେ ଥାଇ । ରେ-ଅକ୍ଷର ସଙ୍ଗେ ରହି ॥
ମଙ୍ଗଳା ରଖୁ ମୋ ଉଦର । ହଅ ଯେଣ ସଙ୍ଗତର ॥
ସୁଦାମା ଜଙ୍ଘ ମୋ ରଖିବ । ରେକାର ସଙ୍ଗତରେ ଥିବ ॥
ଶ୍ରୀଦାମ ରଖୁ ଉରୁ ଦୁଇ । କୃକାର ସଙ୍ଗତେ ମିଶାଇ ॥
ସୁଦାମା ଅଜାନୁ ରଖିବ । ଶ୍ରୀ-କାର ତହିଁ ସଙ୍ଗେ ଥିବ ॥
ଜଙ୍ଘ ରଖିବ ସଖାର୍ଜ୍ଜୁନ । ହ-କାର ସଙ୍ଗତ କରଣ ॥
ସୁବଳ ଦକ୍ଷିଣ ପାଦକୁ । ରେ କାର ଯେନ ସଙ୍ଗତର ॥
ବାମ ପାଦ ରଖ କିଙ୍କଣୀ । କୃଷ୍ଣର ସଙ୍ଗତେଣ ଯେନ ॥

ପୂର୍ବଦିଗ ଶ୍ରୀଳ କୃଷ୍ଣର । କ୍ଷ-କାର ଯେଉଁ ସଙ୍ଗତର ॥
ମହାବାହୁ ପଶ୍ଚିମେ ଥାଇ । କୃ-କାର ସଙ୍ଗତରେ ନେଇ ॥
ଦକ୍ଷିଣେ ଜମ୍ବୁଶୃଙ୍ଗ ଧର । ହଙ୍କାର ଯେଉଁ ସଙ୍ଗତର ॥
ବଣ'ଳ ନୈର୍ଋତ ରଖିବ । କ୍ଲୁଞ୍ଜ ଅକ୍ଷର ସଙ୍ଗେ ଥିବ ॥
ମହାବଳ ଥିବ ଉତ୍ତରେ । କ୍ଷ-କାର ଯେଉଁ ସଙ୍ଗତରେ ॥
ବାୟୁବ୍ୟ ବୃଷଭ ରଖିବ । ହୃଞ-ଅକ୍ଷର ସଙ୍ଗେ ଥିବ ॥
ଦେବପ୍ରସ୍ଥ ଥାଇ ଅଗ୍ନିରେ । ରେକାର ଯେଉଁ ସଙ୍ଗତରେ ॥
ଈଶାନ୍ୟ ଉଜ୍ଜ୍ୱଳ ରକ୍ଷିବ । ହ୍ୱକାର ସଙ୍ଗତରେ ଥିବ ॥
ଉପର ରକ୍ଷୁ ମହାବାହୁ । ରେକାର ସଙ୍ଗତରେ ଥାଇ ॥
ତଳକୁ ରଖିବ ଅନନ୍ତ । ଓଁକାର ଯେଉଁଣ ସଙ୍ଗତ ॥
ଅସ୍ତ୍ରା ରଖିବେ ସ୍ୱୟଂ ଶ୍ୟାମ । ଯେ ସବଭୂତେ ଅସ୍ତ୍ରା ନମ ॥
ଯେ କୃଷ୍ଣ ଗୋପୀଜନ ପ୍ରିୟ । ରଟନ୍ତୁ ବୁଦ୍ଧି ସର୍ବ ଦେହ ॥
ହଅ ଅକ୍ଷର ଶୁକ୍ଳବର୍ଣ୍ଣ । ସର୍ବ ବର୍ଣ୍ଣଙ୍କରେ ଉତ୍ତମ ॥
ଏ ଦେହେ ଅଷ୍ଟ ପାପ ଯେତେ । ସ୍ମରଣେ ହରନ୍ତି ଭୁଇତେ ॥
ରେ କାର ରକ୍ତବର୍ଣ୍ଣ ପ୍ରାପ୍ତେ । ପୁରୁଷ ଅଙ୍ଗେ ଯେ ବର୍ଣ୍ଣିତେ ॥
ପୂର୍ବ ଜନ୍ମର ପାପ ଯେତେ । ହରଇ ରେ-କାର ବୋଲନ୍ତେ ॥
ସ୍ୱ-କାର ଗରୁଡ଼ ବରନ । ଧାଙ୍କ ଅଙ୍ଗ ନିରୂପମ ॥
ଗ୍ରହଣେ ଯେତେ ପାପ ହୋଇ । ସ୍ୱଅ ବୋଲନ୍ତେ ନାଶ ଯାଇ ॥
ଜ୍ୟୋତିରୂପି ମ-କାର ହୋଇ । ସାକ୍ଷାତେ ନିରଞ୍ଜନ ସେହି ॥
ମିଥ୍ୟା ବାକ୍ୟର ପାପ ଯେତେ । ସ୍ମରଣେ ହରଇ ଭୁଇତେ ॥
ନି-କାର ଉଜ୍ଜ୍ୱଳ ସମାନ । ହରେ ଉପପାତକମାନ ॥
ନିଶ୍ୱାସ ଜାତ ପାପମାନ । ଜପନ୍ତେ ହରଇ ତକ୍ଷଣ ॥
ହୁ-କାର ଅଟଇ ଶୁକ୍ଳବର୍ଣ୍ଣ । ରବି ଚନ୍ଦ୍ରମାଙ୍କ ଯେସନ ॥
ଅତି ଦୋଷ ଯେ ମହାପାପ । ଜପ ମାତ୍ରକେ କରେ ଲୋପ ॥
ହରେ ରାମ କୃଷ୍ଣ ବୋଲନ୍ତି । ଏ ନାମ କରେ ଯେ ଜପନ ॥
ଚଉଷଠି ଯେ ଭକ୍ତି ହୋଇ । ଅଛିଦ୍ର ରୂପେ ସେ ଲଭଇ ॥

ଶ୍ଳୋକଃ ।

ଦାମ୍ଭିକାନ୍ତୁ ଅଭକ୍ତାନ୍ତୁ ପରନିନ୍ଦାଜନେନ୍ଦ୍ରୁଃ ।
ବାଚ୍ୟନେ ସର୍ବତେ ମୂର୍ଖେ କୃଷ୍ଣ ପ୍ରେମେ ବହିର୍ମୁଖଃ ॥

ଦାମ୍ଭିକ ଅଭକତ ଜନ । ଅନ୍ୟ ମାର୍ଗ ଯେ ଶିଷ୍ୟ ପୁଣି ॥
ଆପଣା ବୁଦ୍ଧେ ବଡ଼ ହୋନ୍ତି । ବାଇ ଗର୍ବିତ ଯେ ଅଟଇ ॥
ଯେ କୃଷ୍ଣ ପ୍ରେମ ନ ଜାଣିଇଁ । ଏ ଗ୍ରନ୍ଥ ତା ଆଗେ ନ କହୁ ॥
ଅସୁର ବୁଦ୍ଧି ଯେଉଁ ନର । ଶୁଣି ହସନ୍ତି କର କର ॥
ଏ ଶାସ୍ତ୍ର ନିନ୍ଦେ ଯେଉଁ ନର ଅଟଇ ସେ ଲଙ୍କାର ଅପୁର ॥
ଶ୍ରୀରାମ ନାମ ଶୁଣିଥିଲ । ତେଣୁ ମନୁଷ୍ୟ ଦେହ ହେଲ ॥
ଏ ହରି ନାମ କବଚରେ । ଯେ ଏହା ଭବରେ ଅଙ୍ଗରେ ॥
କୃଷ୍ଣ ଚରଣେ ଭକ୍ତି ହୋଇ । ଯମ ଦଣ୍ଡକୁ ଭୟ ନାହିଁ ॥
ଯେ ଗ୍ରହ ପୀଡ଼ା ଭୂତ ପ୍ରେତ । ଡାକଣୀ ପିଶାଚୀ ସମସ୍ତ ॥
ରାଜା ବ୍ୟାଘ୍ର କୁମ୍ଭୀର ସ୍ୱେର । ନିର୍ଭୟ ହୋଏ ଏତେଠାର ॥
ଶତ୍ରୁ ଦେଖିଲେ ଶାନ୍ତ ହୋଇ । ଧନ ଧାନ୍ୟ ବହୁ ମିଳଇ ॥
ଉତ୍ତମ ନାରୀ ପୁତ୍ର ଦେଖେ । ଭକ୍ତି ଲଭଇ କୃଷ୍ଣ ପାଖେ ॥
ହରି ନାମ କବଚ ବାଣୀ । ଶୁଣି ଯେସାବୁ ତର ପ୍ରାଣୀ ॥
ଶ୍ରୀ ନିତ୍ୟାନନ୍ଦ ପ୍ରଭୁ ଆଗେ । ଶ୍ରୀ ଚଇତନ୍ୟ ଅନୁରାଗେ ॥
କହିଲେ ଯେତେ ଭକ୍ତି ରସ । ବ୍ରାହ୍ମଣମାନେ ଥିଲେ ପାଶ ॥
ବୈଷ୍ଣବମାନ ଯେତେ ଥିଲେ । ସେମାନେ ଏ ବିଦ୍ୟା ଶିଖିଲେ ॥
ଶ୍ରୀ ଅତି ବଡ଼ ଜଗନ୍ନାଥେ । ଶୁଣିଲେ ବୈଷ୍ଣବ ସଙ୍ଗତେ ॥
ସକଳ ଭବ ଦୂର କଲେ । ଏହି ଭକ୍ତି ହୃଦେ ଧଇଲେ ॥
ତାଙ୍କ ଆଶ୍ରୟେ ଯେତେ ଜନ । ଏ ଭକ୍ତି କରନ୍ତି ଭାବନ ॥
ବୋଲଇ ବିପ୍ର ଦିବାକର । ଶ୍ରୀଗୁରୁ ପାଦେ ମୋର ଶିର ॥

ଇତି ଶ୍ରୀ ଜଗନ୍ନାଥାମୃତେ ଶ୍ରୀ ଅତିବଡ଼ ଜଗନ୍ନାଥ ଗୋସାଇଁ
ଅନୁକ୍ରମଣି ନାମ ପଞ୍ଚମୋଽଧ୍ୟାୟଃ ।

# ଷଷ୍ଠ ଅଧ୍ୟାୟ ।

ଶୁଣ ହେ ସାଧୁଜନ ମାନେ । ଶ୍ରୀ ଚୈତନ୍ୟଙ୍କର ସ୍ଥାନେ ॥
ଶ୍ରୀ ଜଗନ୍ନାଥ ଦରଶନେ । ଅଛନ୍ତି ପ୍ରଭୁ ତୋଷମନେ ॥
ସକଳ ବଇଷ୍ଣବ ଜନ । ପ୍ରଭୁଙ୍କୁ ପୁଛିଲେ ବଚନ ॥
ଏ ଯେ ଜଗନ୍ନାଥ ମୂରତି । କି ଭାବ ଲଭ ପ୍ରେମଭକ୍ତି ॥
ଏ ବାକ୍ୟ ଶୁଣିଣ ଗୋସାଇଁ । ବୋଇଲେ ଶୁଣ ମନ ଦେଇ ॥

ଶ୍ଲୋକଃ ।

ଈଶ୍ୱରଃ ପରମଃ କୃଷ୍ଣଃ ସଚ୍ଚିଦାନନ୍ଦ ବିଗ୍ରହଃ ।
ଅନାଦିରାଦି ଗୋବିନ୍ଦଃ ସର୍ବକାରଣ କାରଣଂ ॥

ଈଶ୍ୱର ଉପରେ ଈଶ୍ୱର । ପରମ ପରେ ପରାପର ॥
କୃଷ୍ଣ ଉପରେ କୃଷ୍ଣ ଏହି । ବ୍ରହ୍ମ ଉପରେ ବ୍ରହ୍ମ ହୋଇ ॥
ଅନାଦି ଉପରେ ଅନାଦି । ସର୍ବକାରଣ ପରସିଦ୍ଧି ॥
ଶ୍ରୀ ଜଗନ୍ନାଥ ଯେ ମୂରତି । ଏଥୁଁକି ସର୍ବ ଉତପତ୍ତି ॥

ଶ୍ଲୋକଃ ।

କର୍ଣ୍ଣିକାରେ ମଧ୍ୟଂ ଯନ୍ତ୍ରଂ ଷଟ୍କୋଣ ବଜ୍ରକୀଳକଂ ।
ଷଡ଼ଙ୍ଗଷଟ୍ପଦୀସ୍ଥାନଂ ପ୍ରକୃତ୍ୟା ପୁରୁଷେଣ ଚ ।
ମହତ୍ପଦ୍ମ ଦଳ ମଧ୍ୟେ ଷଟ୍କୋଣଯନ୍ତ୍ର ସାଧ୍ୟେତୁ ॥

ଷଡ଼ଙ୍ଗ ଷଟପଦ ସ୍ଥାନ । ରାଧାକୃଷ୍ଣ ଏକ ଆସନ ॥
ଏହି ମଧ୍ୟରେ ଛନ୍ତି ରହି । ଦେବା ଭେଦାଇ ତାହା କହି ॥

ଶ୍ଲୋକଃ ।

ପ୍ରେମାନନ୍ଦ ମହାନନ୍ଦ ରସେନାବସ୍ଥିତଂ ଜଗତ୍ ।
ଜ୍ୟୋତିରୂପେଣ ମନୁଜା କାମବୀଜେନ ସଙ୍ଗତଃ ॥

ପ୍ରେମାନନ୍ଦ ଯେ ମହାନନ୍ଦ । ରସେଣ ହୋଇଣ ଆନନ୍ଦ ॥
ଏ ବେଦଜ୍ୟୋତି ରୂପ ହୋଇ । କାମବୀଜରେ ଛନ୍ତି ରହି ॥
ଏହି ଶ୍ଲୋକର ଅଦ୍ୟପାନ୍ତ । କହିବା ଆଗରେ ସେ ବୃତ୍ତ ॥

ଶ୍ଳୋକଃ ।

ତଦ୍‌ଭକ୍ତଜନ୍ୟାସ୍ୱଂ ତଚ୍ଛସ୍ୟାତ୍ର ତତ୍ର ପଦାର୍ଣି ଶ୍ରିପ୍ରୀମତି ।
ତେ ଚତୁର୍ମୂର୍ତ୍ତି ତଚ୍ଛସ୍ୟାଦତନ୍ତ୍ୟଃ ପରମଃ ପ୍ଳୁତଃ ।

ସେ ପଦ୍ମକେଶର ମଧରେ । ଯେତେ ପଦ ଅଛି ତହିଁରେ ॥
ଚତୁଷ୍ପାଦରେ ଧର୍ମ ମୋକ୍ଷ । ଏହା ସେ ଦଅନ୍ତ୍ର ପ୍ରତ୍ୟକ୍ଷ ।
ଏମନ୍ତେ ଚତୁର୍ଦ୍ଧା ମୂରତ । ଚତୁର୍ଦ୍ଧା ଏଥେଁ ଅଛି ସ୍ଥିତ ॥
ଗୋଲୋକ ନିତ୍ୟ ମହାନିତ୍ୟ । ପରମ ନିତ୍ୟ ଚତୁଃ ସ୍ଥିତ ॥
ଗୋଲୋକ ବଡ଼ ଦାଣ୍ଡ କହ । ବାଇଶି ପାବଛ ସେ ହୋଇ ॥
ମହାନିତ୍ୟ ଜଗମୋହନ । ପରମ ନିତ୍ୟ ସିଂହାସନ ॥
ଚତୁଃପ୍ଳୁତ ଯାହାକୁ କହ । ସ୍ୱର ବେଦରେ ଦିଖ ଏହ ॥
ଏ ପ୍ରେମ ପଞ୍ଚାହିକ ବାଣୀ । ଶ୍ରୀ ଚଇତନ୍ୟ ଚନ୍ଦ୍ର ଭଣି ॥

ଶ୍ଳୋକଃ ।

ମନ୍ତ୍ରସାରଂ ଯନ୍ତ୍ରସାରଂ ତନ୍ତ୍ରସାରଂ ନିକେତନଂ ।
ବିଚିତ୍ର ପ୍ରେମସାରଂ ଚ ବ୍ରହ୍ମବିଦ୍ୟାଞ୍ଚ ଷୋଡ଼ଶୀ ॥

ମନ୍ତ୍ରରେ ମନ୍ତ୍ରରାଜ ସାର । ଯନ୍ତ୍ରରେ ଶ୍ରୀମୂର୍ତ୍ତି ବସ୍ତୁର ॥
ତନ୍ତ୍ର ମଧ୍ୟେ ଶ୍ରୀ ଜଗନ୍ନାଥ । ସର୍ବ ଉଚିତ ସ୍ଥାନ ଏତ ॥
ଦେହରେ ଯେତେ କର୍ମ କର । ପୃଥ୍ୱୀରେ ଯେତେ ଭ୍ରମ ଧର ॥
ଦେହଅନ୍ତେ ଯେ କର୍ମ ଅର୍ଥ । ଏହାକୁ ବୋଲି ତନ ତନ୍ତ୍ର ॥
ଏ ଜଗନ୍ନାଥଙ୍କୁ ଭଜିଲେ । ତନ ତନ୍ତ୍ରକୁ ପାଇ ଭଲେ ॥
ପ୍ରେମହିଁ ଅଛି ଏ ମୂର୍ତ୍ତିରେ । ରସରଙ୍ଗ ଅଛି ଏଥିରେ ॥
ସାକ୍ଷାତ ବ୍ରହ୍ମ ବ୍ରହ୍ମ ଏହି । ଷୋଡ଼ଶ କଳାକୁ ବହନ୍ତ୍ର ॥
ଏତେକ କଳାମାନ ଘେନି । ଦେହଧାର କରନ୍ତ୍ର ଅବନୀ ॥

ଶ୍ଳୋକଃ ।

ପ୍ରେମାନନ୍ଦ ଘନ ତନ୍ତ୍ରଂ ପ୍ରେମମଣ୍ଡଳ ମଣ୍ଡିତଂ ।
ପ୍ରେମ ଅସ୍ୱାଦନେ ଦେବୀ କଥଯ୍ୟ ତ୍ରିପୁରେଶ୍ୱର ।

ପ୍ରେମାନନ୍ଦ ସ୍ୱଥା ଶୋଭନ୍ତ । ସେହ ସନ୍ତ ତତ୍ତ୍ୱ ଅନନ୍ତ ॥
ଏ ପ୍ରେମ ମଣ୍ଡଳ ସମସ୍ତ । ମଣ୍ଡିଛ ତାଙ୍କ ତେଜ ତତ୍ତ୍ୱ ॥
ପ୍ରେମରେ ଆନନ୍ଦ ଭରତେ । ରସିକ ଦେବ ଜଗନ୍ନାଥେ ॥

ଶ୍ଳୋକଃ ।

ଅକ୍ଷରଂ ଚ ପରଂବ୍ରହ୍ମ କ୍ଷରଂ ସର୍ବମିଦଂ ଜଗତ୍ ।
କ୍ଷରାକ୍ଷର ସ୍ୱରୂପେଣ ସ୍ଥିତୋ ବୈ ପୁରୁଷୋତ୍ତମଃ ॥

ଯେରୂପ କ୍ଷୟନ୍ତ ନୁହଇ । ପରମବ୍ରହ୍ମ ବୋଲି କହ ॥
ଜନ୍ମନ୍ତ୍ରଏ ଯେତ୍ତ ଜଗତ । କ୍ଷୟ ରୂପରେ ସେ କଥିତ ॥
ଏ ଜଗନ୍ନାଥ ମୂର୍ତ୍ତି ସାର । ଅକ୍ଷୟ କଳ୍ପ କଳ୍ପାନ୍ତର ॥

ଶ୍ଳୋକଃ ।

ସର୍ବାବତାରକ୍ଷେତ୍ରାଣି ତତ୍ତୀର୍ଥାଗପୂଜ୍ୟଃ ସ୍ଥିତ ।
କ୍ଷରାକ୍ଷରଂ ତାରବ୍ରହ୍ମ ପରମ୍ପା ପୁରୁଷୋତ୍ତମଃ ।

ଯେତେକ ବସ୍ତୁ ଅବତାର । ଏହ ମୂର୍ତ୍ତିରୁ ସେ ବାହାର ॥
କ୍ଷେତ୍ର ଯେତେକ ଛନ୍ତି ମହୀ । ଏହ କ୍ଷେତ୍ରରୁ ଜାତ ହୋଇ ॥
ଯେତେକ ତୀର୍ଥ ଏ ସଂସାର । ଏହ ଚରଣ ସେ ବାହାର ॥
ଯେତେ ବସ୍ତୁ ସଂସାର ହୋଇ । ଏହ ଗର୍ଭରୁ ଜାତ ସେହ ॥
ଯେତେକ ବେଦଶାସ୍ତ୍ର ପୋଥି । ଏହ ବଚନୁ ଜାତ ହୁନ୍ତି ॥
ଚରାଚର ଅଛନ୍ତି ଯେତେ । ଏ ଦେହୁଁ ଜନମ ସମସ୍ତେ ॥
ଏ ଜଗନ୍ନାଥ ଯେ ପରମ । ଏଥିରୁ ଜାତ ସର୍ବବ୍ରହ୍ମ ॥
ଏ ବେଦ ପୁରୁଷେ ଉତ୍ତମ । କ୍ଷ ଏହ କ୍ଷେତ୍ରେ ଅନୁପମ ॥

ଶ୍ଳୋକଃ ।

ଓଁକାରଂ ଶ୍ରୀଜଗନ୍ନାଥ ଚ କ୍ଷେତ୍ରେ କ୍ଷେତ୍ରଜ୍ଞ ମଣ୍ଡଳଂ ।
ଅକାର ମନ୍ତ୍ରମାତ୍ରା ଚ ବ୍ରହ୍ମବିଦ୍ୟା ନ ସଂସ୍ଥିତା ।

ଓଁକାରଠାରୁ ଜନ୍ମ ହୋଇ । ବେଦ ପ୍ରଣବ ବଢ଼ିଯାଇ ॥
ସକଳ ମନ୍ତ୍ର ଯନ୍ତ୍ରସାର । ନାନା ଜ୍ଞାନ ବ୍ରହ୍ମବସ୍ତୁର ॥

ଶୋଧି ବୁଝିବା କଥା ଯେବେ । ଓଁକାରୁ ଜାତ ସିନା ସର୍ବେ ॥
ଓଁକାରେ କେନ୍ଦ୍ର ନ ଚ୍ୟୁତାନ୍ତ । ବ୍ରହ୍ମଜ୍ଞାନ ସାଧି ବସନ୍ତ ॥
ପୁରୁଷୋତ୍ତମେ ଜାତ ହୋଇ । କ୍ଷେତ୍ର ତୀର୍ଥ ବଢ଼ିଲେ ମହୀ ॥
ଏହି ତ୍ରିମୂର୍ତ୍ତିରୁ ବାହାର । ହେଲେ ଅଶେଷ ଅବତାର ॥
ନାନା ପ୍ରତାପେ ସୃଷ୍ଟି କଲେ । ଜଗତେ ମହାଶ୍ରେଷ୍ଠ ହେଲେ ॥
ସାଙ୍ଗ ବସ୍ତୁରବାଞ୍ଚ ଯେବେ । ଏହି କ୍ଷେତ୍ରରୁ ଜାତ ସର୍ବେ ॥

ଶ୍ଳୋକଃ ।

ମକାରଂ ପୂର୍ଣ୍ଣମାତ୍ମା ଚ ପୂର୍ଣ୍ଣବ୍ରହ୍ମ ବଳ୍ଭଂ ସ୍ମରେତ୍ ।
ତତ୍ପରଂ ଶେଷ ଲକ୍ଷେଣ ବ୍ରହ୍ମଚକ୍ରମସ୍ତ୍ରଂ ସ୍ଥିତଂ ॥

ଅକାର ଏକାର ମକାର । ପରମ ଆତ୍ମା ବ୍ରହ୍ମସାର ॥
ଅଶେଷ ଦେବଙ୍କ ଶିର ପତ୍ର । ପଲଙ୍କ ପଞ୍ଚଧା ବର୍ଣ୍ଣିରେ ॥

ଶ୍ଳୋକଃ ।

ସୌଭଦ୍ରଂ ତତ୍ପରଂ ପ୍ରେମ ଶଯ୍ୟାସ୍ଥଂ ଚ ସୁଖାନ୍ନ ଚ ।
ତଦୁକ୍ଷୋତ୍ରେ କାମ ବୀଜଂନ ପଞ୍ଚାତ୍ମିକ ମନ୍ତ୍ରଃ ସ୍ମରେତ୍ ।

ସୁଭଦ୍ରା ଅତ୍ୟନ୍ତ ମଧୁରେ । ପ୍ରେମ ଶଯ୍ୟାଙ୍କ ସୁଖଭରେ ॥
କାମ ବୀଜକୁ ସେ ମିଶାଇ । ପଞ୍ଚାତ୍ମିକ ଲୁବନ୍ତ ସେହି ॥

ଶ୍ଳୋକଃ ।

ରସାନନ୍ଦ ରସଂ ଦତ୍ତ୍ୱା ରମିତ୍ୱା ଅତ୍ର ପୂଜକଂ ।
ପ୍ରଧାନ ଧାରସେ ମଗ୍ନ ଉନ୍ମାଦେ ରସ ଭୁବନଂ ॥

ଶ୍ରୀ ରାଧା ରସ ଦେଉଛନ୍ତି । ଶ୍ରୀକୃଷ୍ଣ ରସ ଅସ୍ୱାଦନ୍ତି ॥
ଶ୍ରେଷ୍ଠ ରସରେ ମଗ୍ନହୋଇ । ଦୁଇ ଭୁବରେ ଛନ୍ତି ଦୁଇ ॥
ସେ ସୁଖ ଜାଣନ୍ତି ଫସାରେ । ସେ ବିନା କେବା ଅଛି ପରେ ॥
ପ୍ରେମାନନ୍ଦ ପ୍ରେମ ଭୁବନେ । ବୁଡ଼ି ଅଛନ୍ତି ସୁଖଭରେ ॥
ପ୍ରେମ ଅଲିଙ୍ଗନରେ ମତ୍ତ । ରାଧାଙ୍କ ସଙ୍ଗେ ଜଗନ୍ନାଥ ॥
ଅଛନ୍ତି ଅତି ସୁଖ ପାଇ । ଏହି ଦାରୁମୂର୍ତ୍ତିରେ ଦୁଇ ॥

ପରମାନନ୍ଦ ସୁଖେ ଛନ୍ତି । ମହା ଆନନ୍ଦେ ସୁଖେ ମାତି ॥
ଦୁଇ ଆନନ୍ଦ ଏକ ଯେଣୁ । ସଚ୍ଚିଦାନନ୍ଦ ରୂପ ତେଣୁ ॥
ଯେ ପେମ ବୋଲି ଶାସ୍ତ୍ରକହି । ଯେ ପ୍ରେମ ଭାବ ଏଥେ ପାଇ ॥
ସ୍ୱଭ ମାର୍ଗରେ ଭଜିବାରେ । ସେ ସ୍ୱଭ ମିଳେ ଏହିଠାରେ ॥
ଯେଉଁ ପେମଭାବ ଭକତ । ସେ ଅଛେ ଜଗନ୍ନାଥ ମୂର୍ତ୍ତି ॥
ସ୍ୱଭ ମାର୍ଗେ ଏହାଙ୍କୁ ଭଜ । ଅନ୍ୟଥା ସେବା ଦୂରେ ତେଜ ॥
ନବବ୍ୱଧ ହୋଏ ଭକତ । ଚତୁର୍ବିଧ ମିଳେ ମୁକତି ॥
ବଧି ବସ୍ତୁର କଲେ ମତି । ଅଷ୍ଟାଦଶ ସିଦ୍ଧି ହୁଅନ୍ତି ॥
ଏକାଣି ପ୍ରକାରେ ଭକତି । ଶାସ୍ତ୍ରରେ ସାଧୁ ଲେଖିଛନ୍ତି ॥
ବହୁଧା ହୁଏ ଦୁଇମତ । ଭଜନ ସାଧନ ରଚତ ॥
ଯେ ଯେତେ ମତରେ ଭାବବ । ସବୁ ଛାଡ଼ି ଏଥେଁ ଅସିବ ॥
ଦର୍ଶନ ମାତ୍ରେ ଭକ୍ତି ମୁକ୍ତି । ପାଇବ ସର୍ବସିଦ୍ଧି ମତି ॥
ଏ ବାଞ୍ଛା ସିଦ୍ଧି ଜଗନ୍ନାଥ । ଅବାଞ୍ଛାରେ ସିଦ୍ଧି ସମସ୍ତ ॥
ଯେ ପ୍ରଭୁ କୃଷ୍ଣ ଚଇତନ୍ୟ । ଏରୂପେ କହିଲେ ବଚନ ॥
ବୈଷ୍ଣବ ମାନେ ଯେତେ ଥିଲେ । ସମସ୍ତେ ଶୁଣି ତୋଷ ହେଲେ ॥
ଥିଲେ ଅତିବଡ଼ ଗୋସାଇଁ । ପ୍ରଭୁ ଆଜ୍ଞା ଶୁଣିଲେ ସେହି ॥
ଏକଥା ମନେ ରଖିଥିଲେ । ଶୋଳକ ଚୌପଦୀ ଲେଖିଲେ ॥
ଅବର ଫଳ ପୋଥି ସେହି । ସଗ୍ରହ କଲେ ଗ୍ରନ୍ଥ ନେଇ ॥
ତହୁଁ ବସ୍ତାର କଲେ ନେଇ । ଯେଉଁରୂପେ ପ୍ରଭୁ ଆଜ୍ଞା ହୋଇ ॥
ଜଗ ମୋହନ ଘରେ ସେହି । ଏତେକ ପ୍ରସଙ୍ଗ ପଡ଼ଇ ॥
ଏମନ୍ତେ ଚଇତନ୍ୟ ହରି । ବସାକୁ ଗଲେ ହରେ କରି ॥
ଏ ପ୍ରେମ ପଞ୍ଚାତ୍ମକ ବାଣୀ । ପ୍ରଭୁ ଚୈତନ୍ୟ ଏହା ଭଣି ॥
ବୋଲଇ ହରି ଦିବାକର । ସେ ପ୍ରଭୁ ପାଦେ ମୋର ଶିର ॥
ଏଗ୍ରନ୍ଥ ଭକ୍ତି ନିରୂପଣ । ସ୍ୱକୀର୍ତ୍ତି ଭକ୍ତି ଅଚରଣ ॥
ଶ୍ରୀ ଅତିବଡ଼ ଯେ ଗୋସାଇଁ । ତାଙ୍କ ଚରଣେ ଅଛି ମୁହିଁ ॥

ସ୍ୱଜିସ୍ୱ ବଇଷ୍ଣବ ଜନ । ଏ ଗ୍ରନ୍ଥ ତାହାଙ୍କର ଧନ ॥
ଇତି ଶ୍ରୀ ଜଗନ୍ନାଥାମୃତେ ଅତିବଡ ଗୋସାଇଁ ଅନୁକ୍ରମଣି
ନାମ ଷଷ୍ଠୋଽଧ୍ୟାୟଃ ।



## ସପ୍ତମ ଅଧ୍ୟାୟ ।

ଚଇତନ୍ୟ ଚରିତାମୃତ । ଶ୍ରୀ ଚଇତନ୍ୟ ମୁଖୁଁ ଉକ୍ତ ॥
ସେ ଗ୍ରନ୍ଥ ବଡ଼ ଦବାକର । କହଇ ସାଧୁଙ୍କ ଅର୍ଥର ॥
ଏନେକ ଦେବ ଚଇତନ୍ୟ । ବଜନ୍ତେ ଶ୍ରୀ ଜଗମୋହନ ॥
ଗରୁଡ଼ ଦାସ ଯେ ପଣ୍ଡିତ । ମତ୍ତ ବଳରାମ ସଙ୍ଗତ ॥
ଶିଷ୍ୟ ରୂପକ ଯେ ଗୋସାଇଁ । ଶ୍ରୀ ସନାତନ ପ୍ରଭୁ ରହି ॥
ଶ୍ରୀ ରଘୁନାଥ ଭଟ୍ଟ ସ୍ଥିତି । ଶ୍ରୀ ଜୀବକ ସ୍ୱାମୀ ଅଛନ୍ତି ॥
ଶ୍ରୀ ଗୋପାଳଦାସେ ଅଛନ୍ତି । ଶ୍ରୀ ରଘୁନାଥ ଦାସେ ଛନ୍ତି ॥
ଅଛନ୍ତି ଏ ଷଡ ଗୋସାଇଁ । ଓଡ଼ିଆ କାଶୀମିଶ୍ରେ ରହି ॥
ସାର୍ବଭୌମ ଅଗ୍ରେ ଅଛନ୍ତି । ଗୋପୀନାଥ ଅସ୍ୱଯେଁ ଛନ୍ତି ॥
ଜଗଦାନନ୍ଦ ଚକ୍ରବର୍ତ୍ତୀ । ମୁକୁନ୍ଦ ଦତ୍ତହିଁ ଅଛନ୍ତି ॥
ଶ୍ରୀ ଦାମୋଦର ଚକ୍ରବର୍ତ୍ତୀ । ଶ୍ରୀବ୍ରହ୍ମାନନ୍ଦେ ଯେ ଅଛନ୍ତି ॥
ଶ୍ରୀ ନିତ୍ୟାନନ୍ଦ ଶ୍ରୀ ଅଦ୍ୱୈତ । ବେଢ଼ପ୍ରଭୁ ଛନ୍ତି ସଙ୍ଗତ ॥
ମହାପ୍ରଭୁ ଶ୍ରୀ ଚଇତନ୍ୟ । ଶ୍ରୀ ଜଗନ୍ନାଥଙ୍କ ଦର୍ଶନ ॥
ଚଉର ବାର ପ୍ରଦକ୍ଷିଣ । ଦ୍ୱାଦଶ ଦଣ୍ଡବତ ମାନ ॥
ଗରୁଡ ଦେଖ ବଇଷ୍ଣବେ । ଅଇଲେ ଗୁଣ୍ଡିଚ୍ଚ ସମ୍ଭର୍ବେ ॥
ନବଦନ ଯାତ୍ରା ସାରିଲେ । ଗୁଣ୍ଡିଚ୍ଚ ଗହଣେ ଖଟିଲେ ॥
ବାହୁଡ ଶ୍ରୀଗୁଣ୍ଡିଚ୍ଚ ଯାତ । ନୀଳକନ୍ଦରେ ଜଗନ୍ନାଥ ॥
ଅଷାଢ଼ ଶୁକ୍ଳ ଏକାଦଶୀ । ସମସ୍ତ ବଇଷ୍ଣବ ମିଶି ॥
ଶ୍ରୀ ପ୍ରଭୁ ଚୈତନ୍ୟଙ୍କ କୂଳେ । ସମସ୍ତେ ଦଣ୍ଡବତ କଲେ ॥

ଶ୍ରୀ ଅଚିବତ ଜଗନ୍ନାଥ । ଦେଖନ୍ତ ସାରଲେ ଦଣ୍ଡବତ ॥
ନିତ୍ୟାନନ୍ଦ ପ୍ରଭୃତି ଯେତେ । ମିଳଲେ ପ୍ରଭୁଙ୍କ ଅଗ୍ରତେ ॥
ହରିନାମ ସେ ପଞ୍ଚରଲେ । ପ୍ରଭୁ ଏରୂପେ ଅଙ୍କିଲେ ॥
ଅନ୍ୟେଣ ମନ୍ତ୍ରଶ୍ଳୋକେ ପୁଣ । ପ୍ରଭୁ ସ୍ଥାପିଲେ ନାମ ଗୁଣ ॥
ଅନ୍ୟେ ହରି ଦୁଇ ଅକ୍ଷର । ଯେ ଅଙ୍କ ଶ୍ରୀ ଚୈତନ୍ୟଙ୍କର ॥
ହେ ସନ୍ଥମାନେ ତୁମ୍ଭେ ଶୁଣ । ଭଜ ଆନନ୍ଦେ ହରି ନାମ ॥
ପତଙ୍ଗ ଅନ୍ଧ ଯେତେ ରୂପ । ସ୍ଥାବର ଜଙ୍ଗମ ଯେତେକ ॥
ଏ ସର୍ବଠାରେ ପୂର୍ଣ୍ଣ ହୋଇ । ହରି ଘବଦ ଛନ୍ତି ରହି ॥
ଭକତ ସ୍ୱରୂପଟି ଯେହୁ । ହରଣେ ବୈଷ୍ଣବ ହୁଅଇ ॥
ପାପ କରଇ ବିନାଶନ । ସ୍ମରଣ ମାତ୍ରେ ଭକ୍ତଜନ ॥
ଦୁଃଖ ସାଗର ବିନାଶଇ । ସୁଖରେ କୃଷ୍ଣ ପାଦ ପାଇ ॥

ଶ୍ଳୋକଃ ।

ଯଥେତ୍ର ସଂସ୍ଥ ସର୍ବେଷୁ ମୂର୍ତ୍ତିଁ ଲୀଳାବଶ୍ୟ ଦେବତା ।
ମଧ୍ୟସ୍ଥ ରସ କେଳୟୋ ରସ ଇତ୍ୟଭିଧୀୟତେ ॥
ରମନ୍ତେ ଯୋଗିନୋଽନନ୍ତେ ସତ୍ୟାନନ୍ଦ ଚିଦାତ୍ମନି ।
ଇତି ରାମ ପଦେନାସୌ ପରଂ ବ୍ରହ୍ମାଭିଧୀୟତେ ॥

ହରି ଚରିତ୍ରଙ୍କି ଅଗମ୍ୟ । ଅଟଇ ଯେଉଁ ରାମ ନାମ ॥
ଅତି ମଞ୍ଜୁଳ ସୁକୁମାର । ଶ୍ରେଷ୍ଠ ଅଟଇ ସର୍ବଠାର ॥
ସକଳ ଭାବେ ପ୍ରବର୍ତ୍ତକ । ପ୍ରେମାନନ୍ଦ ଭାବରେ ସ୍ଥିତ ॥
ସକଳ ବେଦ ବେଦାନ୍ତରେ । ଶ୍ରୀରାମ ନାମ ସର୍ବସାରେ ॥
ରାଧାଙ୍କ ସଙ୍ଗେ ରସ ଯେଣୁ । ରାମ ବୋଲନ୍ତି କୃଷ୍ଣ ତେଣୁ ॥
ନିତ୍ୟ ଯୋଗୀଙ୍କ ହୃଦୟରେ । ଧ୍ୟାନେ ରମନ୍ତି ରାମ ନିତ୍ୟେ ॥
ରାମ ବୋଲିଣ ଯାକୁ କହ । ସଚ୍ଚିଦାନନ୍ଦ ରୂପ ସେହୁ ॥
ଏଣୁ ଏ ବ୍ରହ୍ମ ନିରାକାର । ଶ୍ରୀରାମ ନାମ ମୂଳାଧାର ॥

ଶ୍ଳୋକଃ ।

ଆନନ୍ଦୈକସୁଖଃ ଶ୍ରୀମାନ୍ ଶ୍ୟାମଃ କମଳଲୋଚନଃ ।
ଗୋକୁଳାନନ୍ଦନନ୍ଦନଃ କୃଷ୍ଣ ଇତ୍ୟଭିଧୀୟତେ ॥

କୃଷ୍ଣ ଶବଦର ବ୍ୟାଖ୍ୟାନ । କଲେ ଶ୍ରୀ ଦେବ ଚଇତନ୍ୟ ॥
ଯାବତ ଜୀବର ପରମ । ଆନନ୍ଦ ସୁଖେ କୃଷ୍ଣ ନାମ ॥
ଆନନ୍ଦେ ଅଟନ୍ତି ଅନନ୍ଦ । ବ୍ରହ୍ମ ସ୍ୱରୂପେ ଚଦାନନ୍ଦ ॥
ସ୍ୱଧାଙ୍କ ଅଙ୍ଗୁ ଲକ୍ଷ୍ମୀ ଜାତ । ତେଣୁ ବୋଲନ୍ତି ଯେ ଶ୍ରୀଯୁତ ॥
ସେ ସ୍ୱଧା ସଙ୍ଗୀତ ହୋଇଣ । ଯୁଗଳ ଛନ୍ତି ସଙ୍ଗତେଣ ॥
ନୀଳ ଇନ୍ଦ୍ରମଣି ପଶ୍ଚାତ୍ୟେ । ଶ୍ୟାମ ସୁନ୍ଦର ଯାର କାନ୍ତ୍ୟେ ॥
ପଦ୍ମନ୍ତୁ ଲୋଚନ ସୁନ୍ଦର । ପୃଥ୍ୱୀ ତାରଣେ ନାମ ସାର ॥
ଦୂର୍ବାଦଳ ପ୍ରାନ୍ତ୍ୟେ ଶ୍ୟାମଳ । ବ୍ରହ୍ମ ସ୍ୱରୂପୀ ଅଦମୂଳ ॥
ବ୍ରହ୍ମାଣ୍ଡ ଯେତେ ଋଷିଗଣ । କରନ୍ତି କୃଷ୍ଣ ସଙ୍କୀର୍ତ୍ତନ ॥
ଗୋ ଶବଦେ ମସ୍ତାବ୍ଦର । କୁଳ ଶବଦ ଦେବଙ୍କର ॥
ଭକ୍ତଙ୍କ ମନର ଆନନ୍ଦ । ଏହୁ ଶବ୍ଦେ ଗୋକୁଳାନନ୍ଦ ॥
ଏହୁ ଆନନ୍ଦ ଜାତ ଯେଣୁ । ଆନନ୍ଦାନନ୍ଦ ନାମ ତେଣୁ ॥
ବ୍ରହ୍ମବୈବର୍ତ୍ତ ପୁରାଣରେ । ଏମନ୍ତ ଲେଖିଛ ତହିଁରେ ॥
ଯେତେ ଅଚନ୍ତି ଭକ୍ତବୃନ୍ଦ । ତାହାଙ୍କ ନେହକୁ ଆନନ୍ଦ ॥
ନନ୍ଦନନ୍ଦନ ବୋଲି ବାଣୀ । ଗ୍ରନ୍ଥେ ଲେଖିବା ଯେବେ ଅଣି ॥
ଦ୍ୱାପର ଯୁଗେ ନନ୍ଦ ଜାତ । ଏଠାରୁ ହେବ ନାମ ଖ୍ୟାତ ॥
ତେବେ ବେଦବେଦାନ୍ତେ ବାଣୀ । ଋଷି ମହେଶ ବ୍ରହ୍ମା ଭଣି ॥
ସତ୍ୟାଦ ଯୁଗ କୋଟି କୋଟି । ସେ ବଚନ କୁତ୍ସିତ ଭବନ୍ତି ॥
ଆନନ୍ଦ ଜାତ ଯେଣୁ ହୋନ୍ତି । ଅନନ୍ଦାନନ୍ଦନ ବୋଲନ୍ତି ॥
କରନ କହେ ଯେତେ ବାଣୀ । ନବୃତ୍ତେ ଅଛ ଯେତେ ପୁଣି ॥
ବେଦ ବେଦାନ୍ତେ ଯେତେ ଶୁଣ । ଏ ସର୍ବ କୃଷ୍ଣ ନାମ ଜାଣ ॥
ଯେତେରୂପ ଚକ୍ଷୁ ଦେଖଇ । ଜାଣିବ ହରନାମ ଏହୁ ॥

ବେଦର ହାସ୍ୟ ପରିଯନ୍ତ । ଯେତେକ ଶୁଣି ଏ ଜଗତେ ॥
ସଦ ଅସଦ ବା ବଚନ । ଜାଣିବ ସେହୁ ହରିନାମ ॥

ଶ୍ଲୋକଃ ।

ଅଜ୍ଞାନ ତତ୍ତ୍ୱାର୍ଥ ବିନାଶ ହେତୁଃ
ଚୈତନ୍ୟଂ ସ୍ୱରାଧାରମଣଂ ପୁଂମାସଃ ।
ସୁଶୋତ୍ମନା ଶ୍ୟାମ କଶୋର ମୂର୍ତ୍ତିଂ
ସ୍ମରନ୍ତ୍ର ଚୈତନ୍ୟଂ ମହତା ମହାନ୍ତଃ ॥

ପୁଣିହିଁ ପ୍ରଭୁ ଚଇତନ୍ୟ । କହିଲେ କିନାମ ପ୍ରଚ୍ଛିଲ ॥
ଯେତୁଷ୍ଟ ମହତ ସାଧବ । ଏରୂପେ କର ନାମ ସ୍ତବ ॥
ହରେ ରାମ କୃଷ୍ଣ ସ୍ମରବ । ଅଜ୍ଞାନ କାଳ ବିନାଶିବ ॥
ଅବିଦ୍ୟା ଜନ୍ମ କର୍ମମାନ । ସ୍ମରଣେ କରେ ବିନାଶନ ॥
ଅନନ୍ଦେ ରାଧାଙ୍କ ସଙ୍ଗତେ । ବିହାର କରନ୍ତ୍ର ଯେ ନିତ୍ୟେ ॥
ଶ୍ରୀକୃଷ୍ଣ ରାଧାକୁ ରମନ୍ତ । ତେଣୁ ରାମ ନାମ ବୋଲନ୍ତ ॥
ଶ୍ରୀକୃଷ୍ଣ ନାମ ଯେ ଅଟଇ । ସଚ୍ଚିଦାନନ୍ଦ ରୂପ ସେହୁ ॥
କଶୋର ଶ୍ୟାମଳ ମୂରତ । ରସେ ଲାବଣ୍ୟ ବିନ୍ଦୁ ପ୍ରୀତ ॥
ରସିକ ଭକ୍ତ ରସଭରେ । ବସିବେ ଏ ରସ ସାଗରେ ॥
ରସିକ ଶିଷ୍ୟେ ଦେଖାଇବା । ପରଶିଷ୍ୟକୁ ନ କହିବା ॥
ଯେତୁ ବୈଷ୍ଣବ ଜିତେନ୍ଦ୍ରିୟ । ମନୋଭିରାମ ନାମାଶ୍ରୟ ॥
ସେମାନେ ଏ ରସ ଜାଣନ୍ତ । ଅନ୍ୟ ସେ ପାରକୁ ନୁହନ୍ତ ॥
ଏମନ୍ତ କହ ଗୌରହର । ବସାକୁ ଗଲେ ବିଜେ କର ॥
ଏମନ୍ତେ ଦେବ ଚଇତନ୍ୟ । କହିଲେ ଶ୍ରୀ ଜଗନ୍ମୋହନ ॥
ଏ ପଞ୍ଚ ଶ୍ଲୋକର ଚରତ । ଶ୍ରୀ ଚଇତନ୍ୟ ମୁଖୁଁ ଜାତ ॥
ଏମନ୍ତ ଚୈତନ୍ୟ ମହିମା । ପ୍ରକାଶ ହେଲା ଗୁଣ ସୀମା ॥
ସୂର୍ଯ୍ୟ କିରଣ ପ୍ରାୟେ ହୋଇ । ପ୍ରକାଶ ହୋଇଗଲା ମହୀ ॥
ପ୍ରତାପ ରୁଦ୍ର ନୃପବର । ସିଦ୍ଧ ଅଙ୍ଗ ସେ ସୁରେଶ୍ୱର ॥

ଭକ୍ତ ସାଧନ ନିମିତ୍ତରେ । ଜନ୍ମ ହୋଇଛ ମର୍ତ୍ତ୍ୟପୁରେ ॥
ଅନେକ ବୈଷ୍ଣବେ ପୁଛିଲ । ତହିଁ ଭକ୍ତି ବୋଧ ନୋହିଲା ॥
ଦର୍ଶନ ହେତୁ ଦେଇ ମନ । ସେବିଲି ଦେବ ଚଇତନ୍ୟ ॥
ବୋଇଲି ହର ଭକ୍ତି ମୋତେ । ଅଜ୍ଞା କରବ ନୃପତିରେ ॥
ବୋଲନ୍ତେ ଚୈତନ୍ୟ ଗୋସାଇଁ । ତୋଷ୍ଟୁ ରସେ ଭକ୍ତି ନୋହି ॥
ବସ୍ତ୍ର କଲ୍ଲ ନୃପବର । ଭକ୍ତି ସାଧିବ ଏହିଠାର ॥
ଅନେକ ମତେ ସେବା କଲ୍ଲ । ମହାପ୍ରଭୁ ଅଜ୍ଞା ନୋହିଲ୍ଲ ॥
ଅନେକ ମାୟାରୂପ ହୋଇ । ଜଗମୋହନେ ରାଜା ଯାଇ ॥
ପହଁଚ ଖଣ୍ଡେ ଘେନ କରେ । ପହଁରେ କୁତ୍ସିତ ବେଶରେ ॥
ପ୍ରଭାତ ଅବକାଶ ପାଇଁ । ମହାପ୍ରଭୁ ଯେ ବିଜେ ହୋଇ ॥
ଜଗନ୍ନାଥଙ୍କୁ ଦଣ୍ଡବତ । କରି ଯୋଡ଼ିଲେ ବେନି ହସ୍ତ ॥
ହରେ ରାମ କୃଷ୍ଣ ବୋଲିଣ । ଉଚ୍ଚରେ କରିଲେ କୀର୍ତ୍ତନ ॥
ରାଜା ଯେ ନିକଟରେ ଥିଲେ । ହରେ ରାମ କୃଷ୍ଣ ବୋଇଲେ ॥
ଶୁଣି ଶ୍ରୀଚୈତନ୍ୟ ହରସ । ହସ୍ତରେ ନାମ ସ୍ମରଣ ॥
ଏ କଥା ଉଚିତ ନୁହଇ । ଏଥିରୁ ଭକ୍ତି କ୍ଷୀଣ ହୋଇ ॥
ଶୁଣି ନୃପତି ବେଗେ ଗଲ୍ଲ । ପ୍ରଭୁଙ୍କ ଚରଣେ ପଡ଼ିଲ୍ଲ ॥
ଭୋ ଦେବ ଶ୍ରୀମୁଖ ଶୁଣିଲି । ନାମ ଅମୃତ ଅଶେ କଲି ॥
ଏ ନାମେ କି ଭାବ ଅଛଇ । ଜଗନ୍ନାଥ ଅଙ୍ଗେ ଭେଦାଇ ॥
ନିସାଜ ମିଶାଇଣ ମୋତେ । ଅଜ୍ଞା ଦେବାକ ପ୍ରେମ ଚିତ୍ତେ ॥
ଶୁଣି ଚୈତନ୍ୟ ତୋଷ ହେଲେ । ଜଗନ୍ନାଥ ଦାସେ କହିଲେ ॥
ହେ ଅଭବତ ଜଗନ୍ନାଥ । ରାଜାଙ୍କ କହ ପ୍ରେମତତ୍ତ୍ୱ ॥
ଏମନ୍ତ କହି ଶ୍ରୀ ଚୈତନ୍ୟ । ଶ୍ରୀ ଜଗନ୍ନାଥ ଅଙ୍ଗେ ଲୀନ ॥
ପୂର୍ବେ ଯହିଁରୁ ଅସିଥିଲେ । ଲେଉଟି ତହିଁ ପ୍ରବେଶିଲେ ॥
ଅଭକ୍ତେ ଭକ୍ତି ସାଧିବାକୁ । ଭକ୍ତି ଦେଖାଇଲେ ଭକ୍ତଙ୍କୁ ॥
ସଂସାରେ ଭକ୍ତି ଗୁଣ ଥୋଇ । ନିଜ ଧାମକୁ ବିଜେ ହୋଇ ॥

ଏସ ଭାବେ ଜଗନ୍ନାଥ ଦାସେ । ସେ ଭକ୍ତି ସେବନ୍ତେ ହରଷେ ॥
ସେ କାଳେ ଭକ୍ତି ନ ଜାଣନ୍ତି । ମୁହିଁ ବ୍ରହ୍ମ ବୋଲି ବୋଲନ୍ତି ॥
ଶ୍ରୀହର ନାମ ନ ଜାଣନ୍ତି । ରଜତମ ଭାବେ ବଞ୍ଚନ୍ତି ॥
କୃଷ୍ଣ ଚୈତନ୍ୟ ରୂପେ ଜାତ । ସର୍ବ ଶୁଦ୍ଧ ଭକ୍ତି ଭଜତ ॥
ସେ କୃଷ୍ଣ ଚୈତନ୍ୟ ଚରଣ । ଦୃଢ଼ ଧରାକର ଶରଣ ॥

ଇତି ଶ୍ରୀ ଜଗନ୍ନାଥାମୃତେ ଶ୍ରୀ ଅତିବଡ଼ ଜଗନ୍ନାଥ ଦାସ ଗୋସାଇଁ
ଅନୁକ୍ରମଣି ନାମ ସପ୍ତମୋଽଧ୍ୟାୟଃ ।



## ଅଷ୍ଟମ ଅଧ୍ୟାୟ ।

ଶୁଣିବା ହେଉ ସାଧୁଜନ । ସ୍ୱକିୟା ଭକ୍ତିର ବିଧାନ ॥
ପର ଧର୍ମକୁ ଯେ ଭାବଇ । ତାହାକୁ ପରକିୟା କହି ॥
ଆପଣା ଧର୍ମେ ଯେ ନିପୁଣ । ଧନ୍ୟ ତାର ଭକ୍ତି ସାଧନ ॥
ଗୋପ ଗୋବିନ୍ଦ ଗୋପିଜନ । ସେ ଭାବ ପରକିୟାମାନ ॥
ଗୋପାଙ୍ଗନା ଯେସନ୍ତ ଭାବଇ । ତାହାକୁ ପରକିୟା କହି ॥
ଅଭି ସାରକା ଯେ ହୁଅଇ । ବାସକସଜ୍ଜା ତାକୁ କହି ॥
ବିପ୍ରଲବ୍ଧା ହୋଏ କାହିଁ । କାହିଁ ଖଣ୍ଡିତାରେ ରୁଷଇ ॥
କଳହାନ୍ତରିତାଙ୍କ କାହିଁ । ପରସ୍ତ୍ରୀ ସଙ୍ଗ ଦୋଷ ଏହି ॥
ରସିବା ଯାଏ ସେବି ଥାନ୍ତି । ରସିବା ମାତ୍ରେ ପାଶୋରନ୍ତି ॥
ତେତେଣେ ସଂସାର ଲୋକେ ହର । ସତେ ବୁଲଇ ଯେତେ ଲୋଭର ॥
ପ୍ରୀତରେ ପ୍ରୀତି ହୋଇ ଥାନ୍ତି । ଅସୁଖେ ଅସୁଖ ଗଣନ୍ତି ॥
କାହାର ନାହିଁ ଅଧିକାର । ପ୍ରୀତି ଭାଙ୍ଗିବା ମାତ୍ରେ ପର ॥
ପର କିୟାଭାବଟି ଏହି । ଭକତି ମିଳେ ନ ମିଳଇ ॥
ସ୍ୱକିୟା ଭାବର ଲକ୍ଷଣ । ନିଜ ସ୍ୱାମିଙ୍କ ଆରାଧନ ॥
ସୁଖେ ଅସୁଖେ ସ୍ୱାମୀ ମୋର । ଛାଡ଼ିଲେ ଏକ ଗତେ ପସୁର ॥

ଗୃହରେ ଗୃହିଣୀ ଯେମନ୍ତ । ଦୁଃଖ ସୁଖେ ନ ଚେତେ କାନ୍ତ ॥
ସ୍ୱଧା ଲକ୍ଷ୍ମୀ ରୁକ୍ମିଣୀ ଯୋଗେ । ଏ ଭାବ କୋଟି କୋଟି ଯୁଗେ ॥
ତିନେହେଁ ଭାବ ଛାଡ଼ ନାହିଁ । ଏ ଭକ୍ତି କେ ଛାଡ଼ ପାରଇ ॥
ଯୁଗାଦଭାବେ ଯେ ଭାବଇ । ତାକୁ ସ୍ୱକିୟା ବୋଲି କହି ॥
ଗୋପ ଛାଡ଼ି କୃଷ୍ଣ ଗଲେ । ଗୋପସ୍ତ୍ରିଙ୍କି ପାଶୋରିଲେ ॥
ଗୋପୀ ପାଶୋରି ବେଣୁଧର । ଅବୋର କୁବୁଜା ମନ୍ଦିର ॥
ଛାଡ଼ି ବ୍ରଜ ଦ୍ୱାରକା ପୁର । ଷୋଳସହସ୍ର କନ୍ୟାଠାର ॥
ସ୍ୱକିୟା କରି ଘର କଲେ । ବେଦ ବଚନେ ବନ୍ଧ ହେଲେ ॥
ପୂର୍ବ ଦୁହିତା ଜାତ କଲେ । ତେଣେ ସେ ସଙ୍ଗ ନ ଛାଡ଼ିଲେ ॥
ବୈକୁଣ୍ଠେ ବଜେ କଲେ ବାସ । ସଙ୍ଗତେ ଗଲେ ସର୍ବନାଶ ॥
ସ୍ୱକିୟା ସ୍ୱଭାବ ଏମନ୍ତ । ପରକିୟା ଅନ୍ତ ଅଦ୍ଭୁତ ॥
ଶ୍ରୀକୃଷ୍ଣ ମଥୁରାକୁ ଗଲେ । ଗୋପୀଏ ଗୋପରେ ରହିଲେ ॥
ସ୍ୱକିୟା ଭକ୍ତିର ଚରିତ । କହିବା ଦ୍ୱାରକା ବୃତ୍ତାନ୍ତ ॥
ରୁକ୍ମିଣୀ ମନ ଛଳାଇଲେ । ଗୋପୀ ବେଶ କୃଷ୍ଣ ହୋଇଲେ ॥
ବିଶ୍ୱମୋହନ ରୂପ ଧ'ର । ନବଘନ ଜିଣି ସୁନ୍ଦର ॥
ବଂଶୀ ଅଧରେ ଶୋଭା ପାଇ । ବେଣୀପଟର ପୁଚ୍ଛ ବରହ ॥
କୁଞ୍ଜ ଗୁଞ୍ଜ ତ୍ରିଭଙ୍ଗୀ ଗତ । ବିଶ୍ୱ ମୋହନ ଯେ ମୂରତ ॥
ଦୂରରୁ ରୁକ୍ମିଣୀ ଦେଖିଲେ । ଏଥି ବାଞ୍ଛା ନାହିଁ ବୋଇଲେ ॥
କମ୍ବୁ ଚକ୍ର ଯାହାର ହସ୍ତ । ସେ କୃଷ୍ଣ ମୋର ପ୍ରାଣନାଥ ॥
ଯାଅ ଯମୁନା କୂଳ ଯହିଁ । ଗୋପୀଙ୍କି ନସ୍ତୁରବ ତହିଁ ॥
ଏରୂପେ ଗୋପୀଙ୍କର ନାଥ । ଏଣେ ନ ରମେ ମୋର ଚିତ୍ତ ॥
ଏ ଭକ୍ତି ସାଧିବଟା ଭାବ । ଏରୂପ ହୃଦୟେ ଭାବିବ ॥
ବାହ୍ୟେ ସରୂପ ପ୍ରୀତି ଥିବ । ଅନ୍ତରେ ଏକାନ୍ତେ ଭାବିବ ॥
ଯଦେକ ଏକାମ୍ର ବନ । ରୁଦ୍ର ହୋଇଲେ କୃଷ୍ଣବର୍ଣ୍ଣ ॥
ଶଙ୍ଖ ଚକ୍ର ଗଦା କମଳ । ପାର୍ଶ୍ୱ ଦେଖିଲେ ତା ତ୍ରୋଳ ॥

ବୋଇଲେ ହର ମୁଖ ସ୍ବହିଁ । ଏରୂପେ ମୋର କାର୍ଯ୍ୟ ନାହିଁ ॥
ଯେ ହର ଶୁକ୍ଳ ଦିଗମ୍ବର । ସେ ପାଦେ ଅଛନ୍ତି ମୋହର ॥
ଏଣୁ ଯେ ଯେତେକ ଭ୍ରବର । ସେ ଭ୍ରବେ ଭକତ ଲଭିବ ॥
ପିତା ବା ଗୁରୁଙ୍କ ଚରିତ । ତା ଯେବେ ନ ଆଦରେ ସୁତ ॥
ଯେବେ ଅନ କର୍ମ କରଇ । ବିଟପ ପୁଣ ତାକୁ କହି ॥

ଶ୍ଳୋକଃ ।

ନ ଦେୟଂ ପରଶିଷ୍ୟାୟ ନଦେୟଂ ଦ୍ରବ୍ୟଲୁବ୍ଧିକଂ ।
ନ ଦେୟଂ ମାତୃପିତରଂ ନ ଦେୟଂ ପ୍ରିୟବର୍ଗେ ଚ ।

ଶ୍ରୀ ଜଗନ୍ନାଥ ଭ୍ରବ ଗୁଢ଼ । ଯେ ପରଶିଷ୍ୟ ଭାବେ ବଢ଼ି ॥
ଯେ ଗୁଢ଼ ନିର୍ମାଲ୍ୟ ସେବନ । ଅନ୍ୟ ଦେବ କରେ ପୂଜନ ॥
ଏ ଗ୍ରନ୍ଥ ତାହାକୁ ନ ଦେବ । ପ୍ରିୟ ବର୍ଗରେ ନ କହିବ ॥
ଅନ୍ୟ ଅଶକ୍ତ ତାତ ମାତ । ତାଙ୍କୁ ନ କହିବ ଏ ଗ୍ରନ୍ଥ ॥
ଏ ବ୍ରହ୍ମା ନାରଦ ସମ୍ବାଦ । ଶୁଣନ୍ତେ ହରଇ ପ୍ରମାଦ ॥
ହରିନାମ ଚନ୍ଦ୍ରିକା ଏହି । ବ୍ରହ୍ମା ନାରଦେ ଛନ୍ତି କହି ॥
ହରେ ଶକ୍ତିରୂପ ହୋଇଛି । ହରେକୃଷ୍ଣ ସମସ୍ତ ମଣ୍ଡିଛି ॥
ହରେକୃଷ୍ଣ ଅଟେ ସିହାସନ । ହରେ ସର୍ବମଙ୍ଗଳମାନ ॥
ହରିନାମ ବତିଶାକ୍ଷର । ମନ୍ତ୍ରରାଜ ଶ୍ଳୋକ ଅକ୍ଷର ॥
ଏ ଅଠଗ୍ରନ୍ଥଳଣ ଅକ୍ଷର । ଛନ୍ଦା ଜଗନ୍ନାଥ ଦେହର ॥
ହରେ ରାମ କୃଷ୍ଣ ଯେ ତିନି । ତିନି ମୂରତି ଭେଦ ଘେନି ॥
କାମ ବୀଜ ଏଥେଁ ପୂରିଲ । ସକଳ ମନ୍ତ୍ର ଛଦେ ହୋଇ ॥
ପର ବୀଜକୁ ଏଥୁ ନେଇ । ସ୍ବପ୍ରେମ ଭ୍ରବରେ ମିଶାଇ ॥
ରାଧାଙ୍କ ଅଙ୍ଗେ ସୁସଙ୍କେତ । ତେଣୁ ରମାନାମ ଭଜିତ ॥
ଏମନ୍ତେ ରାଧାକୃଷ୍ଣ ହୋଇ । ଏଥୁଁ ସକଳ ମନ୍ତ୍ର ପାଇ ॥
ଏବେ ହରିନାମ ବିସ୍ତର । ଶୁଣିମା ହୋଇ ଭକ୍ତବର ॥
ହରେକୃଷ୍ଣ ପ୍ରେମରୂପା ଭେଦ । ହରେ ମନ୍ତ୍ର ମହତ୍ତ୍ବ ପଦ ॥

ହରେଟି ବଳଭଦ୍ର ଦେଖି । ହରେଟି କ୍ଷେତ୍ର ଯେ ଅଟଇ ।
ହରେକୃଷ୍ଣ ବସନ୍ତ ଅଟଇ । ହରେକୃଷ୍ଣ ହରିନାମ ହୋଇ ॥
ହରେକୃଷ୍ଣ ମାସ୍ତ୍ୱାରୂପ ସାର । ହରେ ନିତ୍ୟସ୍ଥାନ ବିହାର ॥
ହରେକୃଷ୍ଣ ମାସ୍ତ୍ୱାରୂପ ହୋଇ । ହରେ ସୁଦର୍ଶନ ବୋଲାଇ ॥
ହରେ ଗୋଲୋକଧାମ ଜାଣ । ହରେକୃଷ୍ଣ ପ୍ରେମ ପରିପୂର୍ଣ୍ଣ ॥
ହରେକୃଷ୍ଣ ନନ୍ଦ ସବ୍ୟ ହୋଇ । ହରେ ଗୂଢ଼ପ୍ରେମ ବୋଲାଇ ।
ହରେକୃଷ୍ଣ ସାମ ରସ ରମ୍ୟ । ହରେ ମଧୁର ହାସମାନ ॥
ହରେକୃଷ୍ଣ ଅଟେ ସହଚସ୍ୱ । ହରେ ବୋଲଣ ନାମ ଧରି ॥
ହରେ ରେକାର ଅର୍ଦ୍ଧମାତ୍ରା । ହରେକୃଷ୍ଣ ସାମ ପର ହୃତା ॥
ହରେକୃଷ୍ଣ ମୁଚ୍ଛାକ୍ଷର ହୋଇ । ହରେ ଶିଷ୍ୟରୂପ ଅଟଇ ॥
ହରେଟି ଅଟେ ରମ୍ୟସ୍ଥଳ । ହରେ ବୃନ୍ଦନ ଦାନ ସାର ॥
ହରେ ତ୍ରିକୋଣ ରୂପ ହୋଇ । ହରେ ଚନ୍ଦ୍ରାବଳୀ ବୋଲାଇ ॥
ହରେକୃଷ୍ଣ ରଙ୍ଗଦେବୀ ଜାଣ । ହରେ ପ୍ରେମାଙ୍କ ନିରୂପଣ ॥
ହରେ ଅନନ୍ତ ମୂର୍ତ୍ତି ହୋଇ । ହରେ ରଙ୍ଗରସ ଅଟଇ ॥
ହରେକୃଷ୍ଣ ଅଟେ ରଙ୍ଗ ଦେବୀ । ଲାବଣ୍ୟ ମୂର୍ତ୍ତି ହରି ଭାବ ॥
ହରେକୃଷ୍ଣ ଚନ୍ଦ୍ରମୁଖ ଧରେ । ଲାବଣ୍ୟ ଲୋଚନକୃଷ୍ଣ ହରେ ॥
ହରେ ବଜର ଅଙ୍ଗ ବନ୍ଧୁ । ଯନ୍ତ୍ର ସ୍ୱରୂପୀ ହରି ହୋଇ ॥
ହରେ ଲାବଣ୍ୟ କାମରୂପ । ହରେ ଶୋଭିତ ପୁଷ୍ପ ସ୍ତୂପ ॥
ହରେକୃଷ୍ଣ ପ୍ରେମଅଙ୍ଗ ହୋଇ । ହରେକୃଷ୍ଣ ଭକ୍ତି ସିଦ୍ଧି ଦେଇ ॥
ହରେକୃଷ୍ଣ ମନ୍ତ୍ର ସିଦ୍ଧି ହୋଇ । ହରେ ସକଳ ଭକ୍ତି ଦେଇ ॥
ହରେକୃଷ୍ଣ ସର୍ବ ପାପ ହରି । ହରେକୃଷ୍ଣ ଶ୍ରୀ ପ୍ରେମ ମାଧୁରୀ ॥
ହରି ଶବଦ ଏହି ମତେ । ବ୍ରହ୍ମା କହେ ଷୋଡଶ ଶ୍ଲୋକେ ॥
ଶୁଦ୍ଧ ବନ୍ଧୁତ ହେବାପାଇଁ । ତରି ଅଳପ ଲେଖିଲଇଁ ॥
ଏବେ ଯେ ସମନାମ ବାଣୀ । କହି କହିବା ଶ୍ଲୋକ ପୁଣି ॥
ଷୋଡଶ ଅକ୍ଷର ଶ୍ଲୋକେଣ । ବସ୍ତୁ ନାମ ହୋଏ ନିର୍ମାଣ ॥

ଶ୍ଳୋକଃ ।

ରାମ ରସସ୍ଥଳଂ ଯୁଗ୍ମଂ ରାମ ରାଧା ଭବେତ୍ତତଃ ।
ରାମ ସର୍ବଜ୍ଞ ଚେଷ୍ଟେତ ରାମ ଉଦ୍ଧାର ସର୍ବକଂ ।।
ରାମ ଗୁରୁ ରୂପୀ କୃଷ୍ଣ୍ୟ । ରାମ ଯନ୍ତ୍ର ରସାସ୍ଥିତଃ ।
ରାମ ଲଙ୍କାର ରୂପଶ୍ଚ ରାମ ଲକ୍ଷ୍ମୀ ବଦାନ୍ତତଃ ।।
ରାମ ଭଦ୍ର ସ୍ୱରୂପେଣୋ ରାମ ମାତୃ ଷଡାନନେ ।
ରାମପିର୍ଭିଃ ସଦାଭବେ ରାମ ରାମ ଗୁରୁର୍ଗୁରୁଃ ।।

ରାମ ରହାସ ନିଜ ଧାମ । ରାଧା ସ୍ୱରୂପୀ ରାମ ନାମ ।।
ରାମ ନାମ ସର୍ବ ସ୍ୱର୍ଗତ । ସର୍ବ ଉଦ୍ଧାର ସର୍ବ ହିତ ।।
ରାମ ଗୁରୁ ସ୍ୱରୂପୀ ଭଜ । ରାମ ମନ୍ତ୍ରର ରମା ରାଜ ।।
ରାମ ଅକାର ରୂପୀ ହୋଇ । ରାମ ଲକ୍ଷ୍ମୀ ବୀଜ ଅଟଇ ।।
ରାମ ସୁଭଦ୍ରାରୂପୀ ଜାଣ । ରାମଙ୍କ ମାତୃରୂପୀ ପୁଣ ।।
ରାମ ଯେ ସିଦ୍ଧି ମହାମନ୍ତ୍ରେ । ରାମ ଯେ ଗୁରୁ ଗୁରୁ ହୋଏ ।।
ରାମଙ୍କ ଲୀଳାକୃତମାନ । ରାମ ଭାବେ ହର ଭଜନ ।।
ରାମରୁ ମହା ନିତ୍ୟ ହୋନ୍ତି । ରାମ ପ୍ରାଣ ଅସ୍ମା ଅଟନ୍ତି ।।
ରାମ ଯେ ସୁଭଦ୍ରା ଶରୀର । ରାମ ସକଳ ମନ୍ତ୍ରେ ସାର ।।
ରାମ ଯେ ନିତ୍ୟରେ ବାହାସ । ରାମ ନିତ୍ୟ କ୍ରୀଡ଼ାରେ ରସ ।।
ରାମର ମୂର୍ତ୍ତି ଚନ୍ଦ୍ର ପ୍ରାୟେ । ରାମ ସମସ୍ତଠାରେ ଶୋହେ ।।
ରାମ ଯେ ଗୋପିକା ଶରୀର । ହରିଦ୍ରା ବର୍ଣ୍ଣ ରାମଙ୍କର ।।
ରାମ ଯେ ପ୍ରେମ ସୁଧାପାନ । ରାମ ପ୍ରେମମଧ୍ୟେ ନିମ୍ନନ ।।
ରାମ ଲାବଣ୍ୟ ଦେହ ବନ୍ଧ । ରାମ ପରମ ରସଦାୟୀ ।।
ରାମ ପ୍ରେମାନନ୍ଦ ମୂରତି । ରାମ ଲାବଣ୍ୟନିଧି ଦୀପ୍ତି ।।
ରାମଙ୍କୁ ଅନ୍ୟ ମନ୍ତ୍ର ନାହିଁ । ରାମ ସମସ୍ତ ମନ୍ତ୍ରେ ଥାଇ ।।
ରାମଙ୍କ ସର୍ବ ପରିପୂର୍ଣ୍ଣ । ଅମୃତ ପ୍ରାୟେ ରାମ ନାମ ।।
ରାମ ଉପରେ ମନ୍ତ୍ର ନାହିଁ । ରାମ ମହାନାମ ଅଟଇ ।।

ରାମ ନାମକୁ ଯଜ୍ଞ ତନ୍ତ୍ର । ହର ଭଜନ୍ତି ରାମ ମନ୍ତ୍ର ॥
ସ୍ମର ଦେବଙ୍କ ରାମ ନାମ । ଭଜନେ ପୂର୍ଣ୍ଣ ସର୍ବକାମ ॥
ରାମ ନାମ ହୃଦେ ଭାବନ୍ତି । ଯୋଗୀନ୍ଦ୍ରେ ଦୁର୍ଲଭ ଲଭନ୍ତି ॥
ଯେ ରାମ ନାମ ନିରନ୍ତର । ଭଜନ୍ତି ଗଉରୀ ଶଙ୍କର ॥
ଆତ୍ମା ଯେ ଦେହମଧ୍ୟେ ରହି । ରାମ ନାମରେ ସ୍ଥିତ ସେହି ॥
ହର ସେ ରାମ ଯେ ବୋଲନ୍ତି । ତତକ୍ଷଣେ ଭକ୍ତି ସିଦ୍ଧି ହୋନ୍ତି ॥
ଏ ଅନ୍ତେ ଅନ୍ୟସିଦ୍ଧି ଯେତେ । ଆସି ମିଳନ୍ତି ଅକସ୍ମାତେ ॥
ରାମ ସେ ପତିତ ପାବନ । ରାମ ଭଜିଲେ ପାଇ କୃଷ୍ଣ ॥
ରାମ ସକଳ ସିଦ୍ଧି ଦେଇ । ରାମରୁ କୃଷ୍ଣନାମ ପାଇ ॥
ରାମ ନାମରୁ ଉତ୍ତମାନ । କୃଷ୍ଣ ଭାବନ୍ତି ଅନୁକ୍ଷଣ ॥
ଅଦ୍ୟେ ଯେ ରାମ ନ ବୋଲଇ । ସେ କୃଷ୍ଣ ଭାବ ନ ଲଭଇ ॥
ଅଦ୍ୟେ ନ ବୋଲି ରାମବାଣୀ । ଭକ୍ତି ଲଭିବେ କାହୁଁ ପୁଣି ॥
ଦନା ରାମ ନାମ ନ କହି । କୃଷ୍ଣେ ଭକତ ହୋଏ ନାହିଁ ॥
ଯେ ରାଧା ରାମନାମ ସେହି । ଯେ ଭଜେ ଭକ୍ତି ସେ ଲଭଇ ॥

ଶ୍ଳୋକଃ ।

ରାମ ବିନା ପ୍ରସାଦେନ କୃଷ୍ଣଭାବେନ ପଶ୍ୟତ ।
ରାମ ରାଧା ଭଜନ୍ ଜନ୍ତୁଃ ତସ୍ମୈବୈ ଭକ୍ତିମୁକ୍ତିମାନ୍ ॥

ରାଧା ବୋଇଲେ ଯେତେଲାଭ । ରାମ ବୋଇଲେ ସେହି ଲାଭ ॥
ଯେ ଜନ ଉତ୍ତମ ହୋଇବ । ଧ୍ୱରେ ରାମ କୃଷ୍ଣ ବୋଲିବ ॥

ଶ୍ଳୋକଃ ।

ରାମନାମ ପ୍ରଧାନଶ୍ଚ ବିଶ୍ବାସ ଯୋହି କୁର୍ବତେ ।
ସର୍ବଭାବ ପ୍ରଯୁକ୍ତେନ ରାମ ଅତ୍ରୈବ କେବଳଂ ॥

ରାମ ସେ ଭକ୍ତିରେ ପ୍ରଧାନ । ବିଶ୍ୱାସେ ଭଜ ସାଧୁଜନ ॥
ସକଳ ଭୂତ ଆତ୍ମା ସେହି । ଆତ୍ମା ନ ଥିଲେ ଯେସନେ ଦେହୀ
ଅଦ୍ୟେ ନ ବୋଲି ରାମବାଣୀ । କୃଷ୍ଣ ଭଜନ୍ତି ଯେତେପ୍ରାଣୀ ॥

ଅତ୍ମା ନ ଥିଲେ ଦେହ ପ୍ରାଣେ । ତାର ଉଦଭ ତେତେ ହୋଏ ॥
ପୁଣି ବୋଲନ୍ତି ବେଦବର । ଶୁଣ କୃଷ୍ଣନାମ ବିସ୍ତର ॥

ଶ୍ଳୋକଃ ।

କୃଷ୍ଣନାମାକ୍ଷରେ ବ୍ରହ୍ମ କୃଷ୍ଣସ୍ୟୋଃ ପରମଂ ପଦଂ ।
କୃଷ୍ଣନାମ ପରଂ ଭାବଃ କୃଷ୍ଣନାମ ପରଂ ରସଃ ॥

କୃଷ୍ଣ ନାମଟି ପରଂବ୍ରହ୍ମ । କୃଷ୍ଣନାମ ପରେ ପରମ ॥
କୃଷ୍ଣ ନାମରୁ ଭାବ ନାହିଁ । କୃଷ୍ଣନାମ ରୂପ ଅଟଇ ॥
କୃଷ୍ଣ ନାମ ମକାର ହୋଇ । କୃଷ୍ଣ ଶ୍ରୁତରସ ଅଟଇ ॥
କୃଷ୍ଣନାମ ବିଶେଷ ଗୁଣ । ସକଳ ମନ୍ତ୍ରେ ଶ୍ରେଷ୍ଠ ପୁଣ ॥

ଶ୍ଳୋକଃ ।

କୃଷ୍ଣନାମ ଜଗନ୍ନାଥଃ କୃଷ୍ଣନାମ ମନୋମୟଃ ।
କୃଷ୍ଣଶ୍ଚ ଦେବତା ରୂପଂ କୃଷ୍ଣଃ ପରମ ପୁରୁଷଃ ।

କୃଷ୍ଣ ନାମଟି ଜଗନ୍ନାଥ । । କୃଷ୍ଣ ନାମଟି ସର୍ବତତ୍ତ୍ୱ ॥
ସର୍ବ ଦେବତା କୃଷ୍ଣନାମ । କୃଷ୍ଣଟି ପୁରୁଷ ପରମ ॥
ସର୍ବ ସଙ୍କଳ୍ପ କୃଷ୍ଣ ହୋଇ । ଯେ ଶୁଦ୍ଧ ସେ କୃଷ୍ଣ ବୋଲଇ ॥
କୃଷ୍ଣ ଭାବନ୍ତି ସୁଧାନାମ । ସୁଧା ଭାବନ୍ତି କୃଷ୍ଣ କୃଷ୍ଣ ॥
କୃଷ୍ଣନାମ ପରମ ନାହିଁ । କୃଷ୍ଣ ପରମ ପରଂ ନହ ॥
କୃଷ୍ଣଦେବ ପରମ ଦେବ । ତ୍ରୈଲୋକ୍ୟ ମଧ୍ୟରେ ଦୁର୍ଲ୍ଲଭ ॥
କୃଷ୍ଣନାମ ଉପରେ ନାମ । ନାହିଁଟି ପରମେ ପରମ ॥
ଜଗତବନ୍ଧୁ କୃଷ୍ଣ ହୋଇ । ଗଜ ଉଦ୍ଧାରେ ରୂପ ବହି ॥
ଧର୍ମ ଅର୍ଥ ଯେ କାମ ମୋକ୍ଷ । କୃଷ୍ଣନାମ ଏହି ପ୍ରତ୍ୟକ୍ଷ ॥
ଚତୁର୍ବିଧ ଯେ ମୁକ୍ତି ହୋଇ । କୃଷ୍ଣନାମ ଭଜନେ ପାଇ ॥
ନବବିଧ ଯେ ଭକ୍ତିମାନ । କୃଷ୍ଣ ଭଜନେ ହୋଏ ଜନ୍ମ ॥
ବାଞ୍ଛା ତରୁଏ କୃଷ୍ଣ ନାମ । ଯେ ଯାହା ବାଞ୍ଛେ ପୂର୍ଣ୍ଣକାମ ॥
ଶ୍ରୀକୃଷ୍ଣ ନାମ ପରଛିନ୍ନ । କହିଲେ ଚତୁର ବଦନ ॥

ହରେ ରାମ କୃଷ୍ଣ ତ୍ରିନାମ । ସଭୁର ଶ୍ଲୋକେ ପଢ଼ିଛନ୍ତି ॥
ଏ ଷୋଡ଼ଶନାମ ଅର୍ଥ ଏହି । ବ୍ରହ୍ମା ନାରଦେ ଛନ୍ତି କହି ॥
ଏରୂପେ ହରିନାମ ଧ୍ୟାନ । କର ତରିବ ସାଧୁଜନ ॥
ସ୍ୱଚ୍ଛ ନିର୍ମଳ ସାଧୁ ଦେଖି । ଉଦସ୍ତ ରବି ରୂପ ଶୋହି ॥
ହସ୍ତରେ ପୁଷ୍ପ ରୂପ ଶୋହି । ମଣି ମାଣିକ୍ୟ ବନ୍ଧା ଯହିଁ ॥
ହୃଦେ ଲମ୍ବଇ ପୁଷ୍ପମାଳ । ଅଙ୍ଗରେ ନାନାରତ୍ନ ସାର ॥
କୃପାରେ ତାରନ୍ତି ଭକ୍ତଙ୍କୁ । ଧେବଛ ଦେବ ଦେବତାଙ୍କୁ ॥
ଶୁଦ୍ଧ କାଞ୍ଚନ ବଦ୍ୟୁର୍ଜ୍ଜିଣି । ଚମ୍ପା କୁସୁମ ଅଙ୍ଗ ପୁଣି ॥
ଅତି ଲଳିତ ସୁକୁମାର । ଶ୍ରୀଅଙ୍ଗ ଅଟଇ ଯାହାର ॥
ଲକ୍ଷ୍ମୀ ସହିତେ ଶେଷ୍ଠଗଣ । ଯାହାଙ୍କୁ ସେବନ୍ତି ପ୍ରତିକ୍ଷଣ ॥
ହେ ରାମ ତୁମ୍ଭେ ବିଶ୍ୱାତ୍ମିକା । ସଙ୍ଗତେ ରସବତୀ ହେଲ ॥
ହେ ଦେବଦେବ ନମସ୍କାର । ଧ୍ୟାନରେ ଖଣ୍ଡ ଦୁଃଖ ମୋର ॥
ଏରୂପେ ରାମ ନାମ ଧ୍ୟାନ । କର ତରିବ ସାଧୁଜନ ॥
କୃଷ୍ଣରୂପ ଶ୍ୟାମ ସୁନ୍ଦର । ନିର୍ମଳ ଲୀଳା ଅଙ୍ଗସାର ॥
ବହୁ ଲାବଣ୍ୟ ମେଘ ଦେଖି । ନୀଳ ପଙ୍କଜ ପ୍ରାୟେ ଶୋହି ॥
ସୁନ୍ଦର ଶ୍ରୀକୃଷ୍ଣ ଶରୀର । କେ ତା କରିବ ପଟାନ୍ତର ॥
ଅତି ମଧୁର ରୂପ ସେହି । ଯେ କାମଙ୍କର ଜିଣେ ଦେହି ॥
ପରମ ଆତ୍ମାରୂପୀ ସାର । ଏସ କୃଷ୍ଣ ନାମ ନିତ୍ୟ ସ୍ମର ॥
ପୁଣି କହନ୍ତି ବେଦବରେ । ତ୍ରିନାମ ଧ୍ୟାନ ଏକଠାରେ ॥
ବାମେ ବ୍ରଜଦେଶ ରମଣୀ । ଚନ୍ଦ୍ରାବଳୀ ଦକ୍ଷିଣେ ପୁଣି ॥
ସୁନ୍ଦର ରାଧାଙ୍କ ଅଙ୍ଗରେ । ରସ ଯେ କରନ୍ତି ବିହାରେ ॥
ମଧ୍ୟେ ଶ୍ୟାମ ସୁନ୍ଦର ରୂପ । ନୀଳପଦ୍ମ ପ୍ରାଏ ସ୍ୱରୂପ ॥
ହରେ ରାମ କୃଷ୍ଣ ଯେ ଷୋଳ । ତ୍ରିତତ୍ତ୍ୱେ ସ୍ତବ ତାଙ୍କୁ ପୁଣି ॥
ସେ ରାଧା କୃଷ୍ଣ ଏକମୂର୍ତ୍ତି । 'ହର' ନାମ ମଧ୍ୟେ ଅଛନ୍ତି ॥
ହରେ ରାମ କୃଷ୍ଣ ମନ୍ତ୍ରରେ । ମନ୍ତ୍ରରାଜ ଛନ୍ଦ ଚର୍ଦ୍ଧେରେ ॥

ହରେ ରାମ କୃଷ୍ଣ ଚୈତନ୍ନ । ସ୍ୱରୂପ କରି ତାହା ଚିହ୍ନି ॥
ଅକସ୍ମାତରେ ଯେବେ ଜପେ । ହୃଦେ ଚିନ୍ତନ୍ତି ଏକଥରେ ॥
ପ୍ରେମ ଭକତି ସେ ଲଭନ୍ତି । କାଳେ ଶ୍ରୀଚରଣ ଲଭନ୍ତି ॥
ଯେତେକ ମନ୍ତ୍ର ଅଛି ମହୀ । ଯେ ଯେଉଁ ମନ୍ତ୍ରରେ ସାଧଇ ॥
ଏ ହରି ନାମ ମନ୍ତ୍ରପ୍ର । ଏ ସବେ ଯେତେ ମନ୍ତ୍ର ଭଜ ॥
ଅନେକ ସିଦ୍ଧି ସେ ଜପନ୍ତି । ଭକତି ଦେଇ ନ ପାରନ୍ତି ॥
ସଂସାରେ ସାଧୁମାନେ ଛନ୍ତି । ଅନେକ ମନ୍ତ୍ର ସେ ଦେଖାନ୍ତି ॥
ବେଦ ବଚନେ ମନ୍ତ୍ରମାନେ । ଅଛନ୍ତି ବହୁତ ବିଧାନେ ॥
ତହିଁରେ ଭ୍ରମ ଯେ ହୁଅନ୍ତି । ବହୁତ କାଳେ ସିଦ୍ଧି ପାନ୍ତି ॥
ଏ ମନ୍ତ୍ରରାଜ ହରି ନାମ । ଯେହୁ ଗ୍ରହଣ କରେ କର୍ଣ୍ଣ ॥
ସେ ଜନ୍ମେ ଭକତି ଲଭଇ । ଅନ୍ତେ ମୁକତି ଗତି ପାଇ ॥
ଦ୍ୱାଦଶ ପ୍ରକାରେ ଯେ ପ୍ରେମ । ଯେ ଜାଣେ ସେହି ବଇଷ୍ଣବ ॥
ରସରେ ରତି ପ୍ରୀତି ଶ୍ରୁତି । ହୋଇବ ଏ ଯେ ତିନ ମୂର୍ତ୍ତି ॥
ରତି ପ୍ରୀତି ଶ୍ରୁତି ଯେ ପୁଣ । ନାମରେ ହୋଇଥିବ ପୂର୍ଣ୍ଣ ॥
ଶ୍ରୀ ଜଗନ୍ନାଥ ଯେ ମୂରତ । ଏଥିରେ ରତି ପ୍ରୀତି ଶ୍ରୁତି ॥
ଶ୍ରୀ ଜଗନ୍ନାଥ ଶ୍ରୀ ମୂର୍ତ୍ତିର । ଆବର ମନ୍ତ୍ରରାଜ ସାର ॥
ଏଥିରେ ଯାର ଅନ୍ତେ ନାହିଁ । ଭକ୍ତି ଲଭିବ ସେ ବା କାହିଁ ॥

ଶ୍ଳୋକଃ ।

ଚନ୍ଦ୍ର ହୀନା ଯଥାରାତ୍ରିଃ ରବିହୀନଂ ଯଥା ଦିବା ।
ସୈନ୍ୟହୀନୋ ଯଥାରାଜ ମନ୍ତ୍ରହୀନା ତଥା ନରାଃ ॥

ଲକ୍ଷେ ନକ୍ଷତ୍ର ଶୂନ୍ୟେ ଥାଇ । ଚନ୍ଦ୍ର ନ ଥିଲେ ଶୋଭା ନୋହି ॥
ଶୋଭା ନ ପାନ୍ତି ଦେବଗଣ । ଯେବେ ନ ଥାନ୍ତି ନାରାୟଣ ॥
ସକଳ ଦେବୀମାନେ ଥିଲେ । ନ ଶୋଭେ ଲକ୍ଷ୍ମୀ ଯେ ନ ଥିଲେ ॥
ଯେବେ ନ ଥାଇ ନୃପବର । ପ୍ରଜା ଦଣ୍ଡନ୍ତି ଅସୁନ୍ଦର ॥
ମହାପୁରୁଷ ଜଗନ୍ନାଥ । ତହିଁରେ ପ୍ରେମ କରେ ଅନ୍ତ ॥

ଏମନ୍ତ ମନ୍ତ୍ରରାଜ ବନେ । ପ୍ରାଣୀ ବଞ୍ଚନ୍ତି ଭକ୍ତି ସ୍ଥାନେ, ॥
ଶ୍ରୀ ମନ୍ତ୍ରବଜ ଉପାସନ । ଦ୍ୱାଦଶ ପ୍ରକାରେ ଯେ ପୁଣ୍ୟ ॥
କର ଅନନ୍ତ ଯେଉଁ ଜନ । ସେ ପୁଣ୍ୟ ଲଭଇ ସଂପୂର୍ଣ୍ଣ ॥
ଏବେ ଦ୍ୱାଦଶ ପ୍ରେମ ଗୀତ । ସ୍ୱଜନେ ଶୁଣ ଏକଚିତ୍ତ ॥
ମନ୍ତ୍ରେ ଶିଖ ନାମ କହୁ । ରତି ଦେଖା ହରେ ବୋଲଇ ॥
ଯାହାଙ୍କୁ ତତ୍ତ୍ୱରାଜ କହୁ । ସର୍ବଦା ଅଟେ ଭକ୍ତିଦାୟୀ ॥
ହରିଙ୍କି ରସାରାଜ କହୁ । ମନ୍ତ୍ରେଣ ପ୍ରୀତ ଦେଖା ଏହୁ ॥
ମନ୍ତ୍ରେ ସ୍ମରଣ ରାମ ନାମ । ସ୍ମରଣେ ଭକ୍ତି ପୂର୍ଣ୍ଣ କାମ ॥
ମନ୍ତ୍ରେଣ କ୍ଲୀଂ ବୀଜ କହୁ । ଶ୍ରୁତି ଦେବୀ ତତ୍ତ୍ୱ ଅଟଇ ॥
କୃଷ୍ଣ ନାମ ସେହୁ ପ୍ରମାଣ । ରତି ପ୍ରୀତି, ଶ୍ରୁତି ମନ୍ତ୍ରେଣ ॥
ଏମନ୍ତେ ତିନ ପ୍ରେମ ହୋଇ । ଭଜନେ ଭକ୍ତି ସେ ଲଭଇ ॥
ଏବେ ଶ୍ରୁତିଙ୍କର ପ୍ରେମ ତିନ । ଯାହା କହନ୍ତେ କୁଶପାଣି ॥
ରତି ବଳଭଦ୍ର ମୂରତି । ସୁଭଦ୍ରା ପ୍ରେମରସେ ପ୍ରୀତି ॥
ଶ୍ରୁତି ଅଟନ୍ତି ଜଗନ୍ନାଥ । ରତି ପ୍ରୀତିଙ୍କ ସାକ୍ଷାତତ୍ତ୍ୱ ॥
ଜଗନ୍ନାଥ ବଳଭଦ୍ରରେ । ତିନ ପ୍ରେମ ରୁହଁ ଏଥିରେ ॥
ଏବେ ସେ ପ୍ରେମ ରସମାନ । କହିବା ହିତତ୍ତ୍ୱ ବିଧାନ ॥
ଶ୍ରୀଜଗନ୍ନାଥ ଯେ ମୂର୍ତ୍ତିରେ । ପ୍ରେମଭାବ ତତ୍ତ୍ୱ କହିଁରେ ॥
ରତି ଯେ ପ୍ରେମ ଅଙ୍ଗହୋଇ । ପ୍ରୀତି ଅଟଇ ଭୁଜ ଦୁଇ ॥
ଶ୍ରୁତି ଚୁମ୍ବନ ଦାନ ହୋଇ । ଶ୍ରୁତେ ପ୍ରେମ ଭାବ ଏହୁ ॥
ଶ୍ରୁତି ଯେ ରାଧା କୃଷ୍ଣ ଅଙ୍ଗ । ଏ ରୂପେ ପ୍ରେମ ତିନ ଅଙ୍ଗ ॥
ହରି ନାମ ଅଟଇ ରତି । ରାମ ନାମ ହୋଏ ପୀରତି ॥
କୃଷ୍ଣ ନାମ ଶ୍ରୁତି ଅଟଇ । ନାମରେ ତିନ ପ୍ରେମ କହୁ ॥
ଦ୍ୱାଦଶ ପ୍ରେମ ମତ୍ତ୍ୱଭର । କହିଲୁ ହୃଦ ମଧ୍ୟେ ଧର ॥
ଏ ପ୍ରେମ ଯେବା ନ ଜାଣନ୍ତି । ବୈଷ୍ଣବେ ଗଣନା ନୁହନ୍ତି ॥
ଏମନ୍ତ ଭାବ ନ ଜାଣିବ । ବୈଷ୍ଣବ କେମନ୍ତେ ହୋଇବ ॥

ଏ ଦୃଷ୍ଟି ଯେବେ ତାର ନାହିଁ । ପ୍ରଭୁ ତାହାକୁ ବଶ କାହିଁ ॥
ତାର ପରପାକ ଲକ୍ଷଣ । ନୂହଇ ହର ପ୍ରିୟ ଜାଣ ॥
ଚଉରଶି ଯେ ଲକ୍ଷ ଯୋଢ । ଭ୍ରମି ମନୁଷ୍ୟ ହୋଇ ଜନ୍ମି ॥
ତହିଁରେ ଭାଗ୍ୟ ଥାଇ ଯେବେ । ନର ଶରୀରେ ଜ୍ଞାନ ଲଭେ ॥
ଉତ୍ତମ ଜନ କୋଟିକରେ । ସାଧୁ କୋଟିଏ ଏ ସଂସାରେ ।
ସାଧୁ କୋଟିଏ ଯେବେ ପାଇ । ସୁସାଧୁ ଗୋଟିଏ ମିଳଇ ॥
ସୁସାଧୁ କୋଟି ଯେବେ ହେବ । ମିଳଇ ଏକ ବଇଷ୍ଣବ ॥
ବୈଷ୍ଣବ କୋଟି ସମୂହରେ । ଜଣେ ସୁବଇଷ୍ଣବ ନରେ ॥
ସୁବଇଷ୍ଣବ କୋଟି ଯେବେ । ସନ୍ଥ ଗୋଟିଏ ପାଇ ତେବେ ॥
ସନ୍ଥ କୋଟିଏ ଯେବେ ପାଇ । ସୁସନ୍ଥ ଜଣେକ ମିଳଇ ॥
ସୁସନ୍ଥ କୋଟିକ ମଧ୍ୟରେ । ଜଣେ ମହନ୍ତ ମିଳ ପାରେ ॥
ପ୍ରେମରେ ଯୁକ୍ତ ଯେବେ ହୋଇ । ତାଙ୍କୁ ମହନ୍ତ ବୋଲି କହି ॥
ପ୍ରେମଭାବରେ ଯେ ମହନ୍ତ । ଅଥବା ସ୍ୱଅଇ ପ୍ରାପତ ॥
ଦ୍ୱାଦଶ ଭାବ ପ୍ରେମ ମାନ । ପରମାନନ୍ଦରେ ଭଜନ୍ତି ।
ପ୍ରେମ ଅନନ୍ଦ ଗୁଣେ ଥାଇ । ମହନ୍ତ ବୋଲି ତାକୁ କହି ॥
ଯେ ପ୍ରାଣି ଏ ସୁଖରେ ଥିବ । ତାଠାରେ ଶରଣ ପଶିବ ॥
ବେଦ ବଚନର ଅସ୍ତର । ଜରେ କୁଳ ଧର୍ମ ଶସ୍ତ୍ର ॥
ଉତ୍ତମ ବଂଶ ସଙ୍ଗତରେ । ସେବଇ ଗୁରୁଙ୍କ ପଦ୍ମରେ ॥
ବେଦ ପ୍ରମାଣେ କର୍ମ କରେ । ସାଧୁ ବୋଲାଇ ଏ ସଂସାରେ ॥
ଶୁଦ୍ଧ ପଦ୍ଧବ ନିରନ୍ତର । ନାମେ ଲାଳସା ଯା ହୃଦର ॥
ପ୍ରେମ ଭାବରେ ନିରମାଣି । ସୁସାଧୁ ବୋଲି ତାହା ଜାଣି ॥
ରତି ପ୍ରୀତି ଶ୍ରୁତି ଯେ ଗୁଣ । ମନ୍ତ୍ରସକଳ ନିଶାଳଣ ॥
ସେ ପୁଣ ପଞ୍ଚାତ୍ମା ଭାବରେ । ମନ୍ତ୍ର ବହାଇ ଶ୍ରୀମୂର୍ତ୍ତିରେ ॥
ଶ୍ରୀଜଗନ୍ନାଥ ଯେ ମୂରତି । ତହିଁରେ ପ୍ରେମର ଯେ ଗତି ।
ଦ୍ୱାଦଶ ପ୍ରେମ ନ ଜାଣଇ । ମହନ୍ତ ବୋଲାଇବ କାହିଁ ॥

ତେଣୁ ମହନ୍ତ ସେ ବୋଲାଇ । ଅନ୍ତେ ସେ ବୈକୁଣ୍ଠ ଲଭଇ ॥
ଶ୍ରୀରାଧାଙ୍କ ମୂର୍ତ୍ତିଲାବଣ୍ୟ । ଶ୍ରୀମୁଖାମ୍ବୁଜ ସୁପ୍ରସନ୍ନ ॥
ଶ୍ରୀରାଧା କୃଷ୍ଣ ଏ ପଖରେ । ମୁଖେ ଛନ୍ତି ଶ୍ରୀମୂର୍ତ୍ତିଠାରେ ॥
ଶ୍ରୀମୂର୍ତ୍ତି ମଧ୍ୟେ ରାଧା ଦେଖ । ବଦନମଣ୍ଡଳେ ରୂପରେଖ ॥
ସେ ରାଧାକୃଷ୍ଣ ସଙ୍ଗରେ । ଅଛନ୍ତି ଏକତ୍ର ଭାବରେ ॥
ଏ ମନ୍ତ୍ରରାଜ ଜାଣିଥିବ । ମୂର୍ତ୍ତିରେ ଭେଦାଇ ଜାଣିବ ॥
ମୂଳ ପ୍ରେମ ଆନନ୍ଦ ରସ । ହୃଦରେ ଘେନିବ ବିଶେଷ ॥
ଏ ମନ୍ତ୍ର ରାମଚନ୍ଦ୍ର ସାର । ଉପଦେଶ ହୋଇ କହିବ ॥
ସେହିନ୍ତୁ ମହନ୍ତ ବୋଲାଇ । ଅନ୍ତେ ମହନ୍ତ ଗତି ପାଇ ॥
ଏ ବ୍ରହ୍ମା ନାରଦ ସମ୍ବାଦ । ଶୁଣନ୍ତେ ହରଇ ପ୍ରମାଦ ॥
ମନମୋହନତତ୍ତ୍ୱ ଏହି । ଶଏ ଶ୍ଳୋକରେ ଛନ୍ତି କହି ॥
ତହିଁରୁ ଠିକ ଠିକ କରି । ଥୋକାଏ କହିଲି ବିସ୍ତାରି ॥
ଶ୍ରୀଅତିବଡ଼ ଜଗନ୍ନାଥ । ସେ ଗୁରୁଙ୍କର ଏହି ମତ ॥
ଶ୍ରୀ ଜଗନ୍ନାଥଙ୍କ ପୟର । ଶରଣ ବିପ୍ର ଦିବାକର ॥

ଇତି ଶ୍ରୀ ଜଗନ୍ନାଥାମୃତେ ଶ୍ରୀଅତିବଡ଼ଜଗନ୍ନାଥ
ଦାସଙ୍କ ଅନୁ କର୍ମଣି ନାମ ଅଷ୍ଟମୋଽଧ୍ୟାୟଃ ।



## ନବମ ଅଧ୍ୟାୟ ।

ଶୁଣ ସଜ୍ଜନେ ଦେଇ ଚିତ୍ତ । ଶ୍ରୀହରି ନାମର ଚରିତ ॥
ଯୁଗଯୁଗାନ୍ତେ ହରି ନାମ । ଅକ୍ଷୟ ଗୁଣ ପୂର୍ଣ୍ଣକାମ ॥
ଦ୍ୱାପର ଯୁଗର ଚରିତ । ଅନେକ ମୁନି ବ୍ରହ୍ମାସୁତ ॥
ମିଳିଲେ ଦ୍ୱାରକାଭୁବନ । ଦେଖି ଉଦ୍ଧବ ତୋଷମନ ॥
ଚରଣେ ଦଣ୍ଡବତ କଲେ । ଦିବ୍ୟ ଆସନେ ବସାଇଲେ ॥
ବୋଇଲେ ଶୁଣ ମୁନିବର । ତୁମ୍ଭେ ସକଳେ ଭକ୍ତସାର ॥

କେବଣ ମନ୍ତ୍ର ଭଜ ପ୍ରାଣୀ । ଭକ୍ତି ଲଭନ୍ତି ତତକ୍ଷଣି ॥
ସେ ମନ୍ତ୍ର କହ ମୁନିବର । ଯେ ପ୍ରେମ ଭକ୍ତିର ବିସ୍ତର ॥

ଶ୍ଲୋକଃ ।

ହରେ ରାମ କୃଷ୍ଣ ମନ୍ତ୍ରଃ ଅତ୍ରାନାଂ ପରମୋ ରସଃ ।
ତତ୍ କଥା ପ୍ରେମ ଲାବଣ୍ୟଂ ରାଧାକୃଷ୍ଣ ପ୍ରିୟଂ ଯଥା ।

ହରେ ରାମ କୃଷ୍ଣ ଯେ ବାଣୀ । ଅପ୍ରା ପରମତତ୍ତ୍ୱ ପୁଣି ॥
ଏମନ୍ତ ଅମୃତ ଅଟଇ । ଶ୍ରୀରାଧା କୃଷ୍ଣ ବଶ ଯହିଁ

ଶ୍ଲୋକଃ ।

ଦ୍ୱାତ୍ରିଂଶଦକ୍ଷରଂ ମନ୍ତ୍ରଃ ଷୋଡ଼ଶନାମମୁଚ୍ୟତେ ।
ଦେବତା ଗୁରୁ ଶିଷ୍ୟଶ୍ଚ ମହାମନ୍ତ୍ରଃ ସ ତିଷ୍ଠତି ।

ବତିଶାକ୍ଷର ମନ୍ତ୍ର ଏହି । ଷୋଡ଼ଶ ନାମ ଏ ବୋଲଇ ॥
ଶିଷ୍ୟ ଗୁରୁ ଦେବତା ହୋଇ । ଏ ତିନି ମନ୍ତ୍ରେ ଏ ଅଛଇ ॥
ଶୁଣି ଉଦ୍ଧବ ତୋଷଭରେ । ପୁଛିଲେ ମୁନିଙ୍କ ଅଗ୍ରରେ ॥
ତୁମ୍ଭ ବଚନୁ ଯେବା ଜାତ । ସଂସାର ନିସ୍ତାରଣ ପଥ ॥
ହରେ ରାମ କୃଷ୍ଣ ଯେ ତିନି । କିରୂପ କଲା ସ୍ତବ ଯେଣି ॥
କିରୂପେ ସ୍ତବିବା ମନରେ । କହିବା ହେଉ ମୁନିବରେ ॥
କହନ୍ତି ବ୍ରହ୍ମାଙ୍କ କୁମର । ଶୁଣ ଉଦ୍ଧବ ମନସ୍ଥିର ॥
ଏମନ୍ତ ଯନ୍ତ୍ର ହେଲା ଜାତ । କହଇ ତହିଁର ବୃତ୍ତାନ୍ତ ॥
ନିତ୍ୟରେ କିଶୋର କିଶୋରୀ । ଯୁଗଳଭାବେ ପ୍ରେମ ଭରି ॥
ଅତି ପ୍ରେମରେ ରସଭରେ । ଶବଦ ଶୁଭିଲା ମୁଖରେ ॥
ହକ୍ଷର ରାଧା ମୁଖୁଁ ଜାତ । ରେ କ୍ଷର କୃଷ୍ଣରୁ ସମ୍ଭୂତ ॥
ସେଯୁକ୍ତ କିଶୋରୀ କିଶୋର । ଯୁକ୍ତ ହୋଇଲେ ପ୍ରେମଭର ॥
ରାଧାରୁ ଅ ଅକ୍ଷର ଜାତ । କୃଷ୍ଣରୁ ମଅକ୍ଷ ସମ୍ଭୂତ ॥
କୃରୁ ଶବଦ ରାଧା ମୁଖେ । ଷ୍ଣ କୃଷ୍ଣ ପରମଷ୍ଟ ସୁଖେ ॥
ଯୁକ୍ତ ରୁ ଯୁକ୍ତ ଭାଷା ଜାତ । ଅକ୍ଷର ହୋଇଲେ ଯୁକ୍ତତ ॥

ହରେ ରାମ କୃଷ୍ଣ ହୋଇଣ । ତହୁଁ ଜନ୍ମିଲା ତିନିନାମ ॥
ସତଶାସ୍ତ୍ର ଦସ୍ତାକୁ ଯେଣ । ଜନ୍ମ ହୋଇଲେ ନାମତିନ ॥
ରକ୍ତ ଶୁକ୍ଳ ଶ୍ୟାମବର୍ଣ୍ଣ । ହସ୍ତୁ ତା କଲେ ଅରାଧନ ॥
ସେ ହସ୍ତ ସଂସାର ତାରଣେ । ଦେଲେ ତା ଦେବ ନାରାୟଣେ ॥
ସେ ନାରାୟଣଙ୍କୁ ପୂର୍ବରେ । ମୁହିଁ ପୁଛିଲି ସୁଖଭରେ ॥
ସେ ମୋତେ ଯାହା ଛନ୍ଦ କହି । ରାମ ନାମ ଯେ ବୃହହୋଇ ॥
କହିତେ ଅବା ତାହା କହି । କୃଷ୍ଣ ନାମ ବୃହ ହୁଅଇ ॥
ହର ନାମ ଅଠ ହୁଅଇ । ଏମନ୍ତେ ଷୋଳନାମ ହୋଇ ॥
ତିନିନାମ ଷଡ଼ ଅକ୍ଷର । ପରମ ଅତ୍ମା ନିର୍ବିକାର ॥
ହରେ ରାମ କୃଷ୍ଣ ଯେ ହୋଇ । ତହିଁରେ ଓଁ କାର ମିଶାଇ ॥
ସେହି ଓଁ କାର ହରେ ହୋଇ । ଏରୂପେ ବୃହନାମ କହି ॥
ହରେ ରାମ ହରେ କୃଷ୍ଣର । ଏ ରୂପେ ମନ୍ତ୍ର ଜପକର ॥
ରତି ପ୍ରୀତି ସ୍ମୃତି ଶ୍ରବଣର । ତିନି ନାମ ଭାବ ହୃଦରେ ॥
ବ୍ରହ୍ମାହୁଁ ଛନ୍ଦ ଯାହା କହି । ହୃଦରେ ଯେଣ ଅଛ ମୁହିଁ ॥
ଯନ୍ତ୍ର ମନ୍ତ୍ର ଯେ ତନ୍ତ୍ର ହୋଇ । ତିନି ନାମରେ ଭେଦ ସେହି ॥
ହରେ ଶବ୍ଦଟି ରତି ହୋଇ । ପ୍ରୀତ ରାମ ଶବ୍ଦକୁ କହି ॥
ସ୍ମୃତି କୃଷ୍ଣ ଶବଦ କହି । ବସ୍ତୁଙ୍କେ ତିନି ତତ୍ତ୍ୱ ଏହି ॥
ହରେ ନାମଟି ବଳଦେବ । ରାମ ସୁଭଦ୍ରା ଅଙ୍ଗେ ଭାବ ॥
କୃଷ୍ଣ ନାମଟି ଜଗନ୍ନାଥ । ଅହରେ ସୁଦର୍ଶନାନନ୍ତ ॥
ହରେ ନାମଟି ଅସ୍ୱାଦନ । ରାମ ନାମ ରସ ଶ୍ରବଣ ॥
କୃଷ୍ଣନାମରେ ଫଳ ହୋଇ । ଏରୂପେ ତିନିରସ ପାଇ ॥
ମନ୍ତ୍ର ମଧ୍ୟରେ ମନ୍ତ୍ରରାଜ । ଯନ୍ତ୍ରରେ ଶ୍ରୀମୂର୍ତ୍ତି ବିରାଜ ॥
ଯନ୍ତ୍ରରେ କ୍ଷେତ୍ରୋତ୍ତମ ହୋଇ । ଦ୍ୱାଦଶ ଅଙ୍ଗଭକ୍ତି ଏହି ॥
ଶିଷ୍ୟ ଅନନ୍ତ ବଳଦେବ । ଗୁରୁ ସୁଭଦ୍ରା ଅଙ୍ଗେ ଭାବ ॥
ଦେବତା ଦେବ ଜଗନ୍ନାଥ । ଏରୂପେ ଭାବ ତିନି ତତ୍ତ୍ୱ ॥

ହରେ ରାମ କୃଷ୍ଣ ଯେ ତତ୍ତ୍ୱ । ଅତି ଅନନ୍ଦ ମନେ ଘେନ ॥
ଅତ୍ମା ନରୂପ ମନଧର । ଭଜିବ ରୂପତ ଚଶ୍ୱର ॥
ଏ ମନ୍ତ୍ର ସ୍ମରଣ ମାତ୍ରକେ । ମୁକ୍ତେ ସାଧିବ ଏ ସଂସାରେ ॥
ଯେ ପ୍ରେମ ଜାଣିବ ଯେ ଚତ୍ତ୍ୱେ । ସାଧନ ଅପିଛ କେମନ୍ତେ ॥
ସାଧ୍ୟ ସ୍ୱଦିଛ ଦିବ୍ୟ ହୋଇ । ଏମନ୍ତେ ତିନ ନାମ ପାଇ ॥
ବ୍ରହ୍ମାଦିଷ୍ୟ ଦେବତାମାନ । ଏହା ଯେ କହିଲୁ ବଛିନ ॥
ହରଙ୍କୁ ରାଧାଅଙ୍ଗୁ ଜାତ । ରେମନ୍ତ କୃଷ୍ଣରୁ ସମ୍ଭୂତ ॥
ସ୍ତ୍ରିଶ୍ୱ ପୁରୁଷ ଅଙ୍ଗ ଦୁଇ । ବେଦାଇ ମନ୍ତ୍ରେ ଦେଲ କହି ॥
ପ୍ରରେ ନାମ ଦୁଇ ଅକ୍ଷର । ସ୍ତ୍ରିଶ୍ୱ ପୁରୁଷର ହୋଇ ॥
ରାମ ବୋଲି ଯେ ବେନି ହୋଇ । ଏହୁ ସ୍ତ୍ରିଶ୍ୱ ପୁରୁଷ ଦୁଇ ॥
କୃଷ୍ଣ ନାମ ଅକ୍ଷର ବେନି । ଅନନ୍ତ ପୁରୁଷ ଜାଣିଲି ॥
ହ କ୍ଷର ରାଧା ଯେ ଅନନ୍ତ । ରେ କ୍ଷର କୃଷ୍ଣ ଯେ ମୂରତି ॥
ରା କ୍ଷର ରାଧିକା ଈଶ୍ୱର । ମ କ୍ଷର କୃଷ୍ଣର ଚଶ୍ୱର ॥
କୃଷ୍ଣର ରାଧାଙ୍କର ଭାବ । ଷ୍ଣ କ୍ଷର କୃଷ୍ଣର ଦୁର୍ଲ୍ଲଭ ॥
ଉଦ୍ଧବ ଚନ୍ଦ୍ରକାର ବାଣୀ । ହରି ନାମ ପ୍ରଚ୍ଛିଲ ପୁଣି ॥
ଉଦ୍ଧବ ନାରଦ ସମ୍ବାଦ । ସୁବଚନ ଶୁଣି ସୁଜ୍ଞ ବୋଧ ॥
ଏ ଯୁଗ୍ମ କିଶୋରୀ କିଶୋର । ଯୁଗ୍ମ ସ୍ୱରୂ ଚରଣ ସାର ॥
ତହିଁ ଯେ ପ୍ରେମରସ ବନ୍ଧ । ସେ ଅଟେ ହରିଙ୍କର ଭଦ୍ର ॥

ଇତି ଶ୍ରୀ ଜଗନ୍ନାଥାମୃତେ ଶ୍ରୀ ଅଦ୍ୱୈତ ଜଗନ୍ନାଥ ଗୋସାଇଁ
ଅନୁକ୍ରମଣି ନାମ ନବମୋଽଧ୍ୟାୟଃ ।

## ଦଶମ ଅଧ୍ୟାୟ ।

ସ୍ୱପ୍ରେମ ଭକ୍ତି ନିରୂପଣ । ଶ୍ରୀ ମନ୍ଦରାଜ ଉପାସନ ॥
ବେଦ ପୁରାଣଙ୍କ ବଚନ । ଶ୍ରୀ ଜଗନ୍ନାଥ ଭେଦମାନ ॥
ଭୂଦରେ ଯେଅବା ପ୍ରଚ୍ଛିଲ । ହରି ନାମର ଭେଦମାନ ॥

ମନ୍ତ୍ରର ଯେ ଅବା ଯନ୍ତ୍ରର । ଯନ୍ତ୍ରରେ ଯେବା ବର୍ଦ୍ଧସାର ॥
ତନ୍ତ୍ରରେ ଯେତେ କୋଟି ବୋଲଇ । ତହିଁରେ ଯେବା ସିଦ୍ଧି ହୋଇ ।
ଏହା ଜାଣନ୍ତି ଶୁଦ୍ଧଚିତ୍ତେ । ପ୍ରେମ କରନ୍ତି ଅନୁବ୍ରତେ ।
ଅତଏବ ଜଗନ୍ନାଥଙ୍କୁ । ମୁହିଁ ଯେ ନମଇଁ ତାହାଙ୍କୁ ॥
ସେ ପୁଣ ଅଟନ୍ତି କେମନ୍ତ । ଦିବ୍ୟ ଶରୀର ବର୍ଣ୍ଣି ଶାନ୍ତ ॥
ଗୁରୁଙ୍କ ଆଜ୍ଞାରେ ତତ୍ପର । ପ୍ରେମଭାବରେ ଜର ଜର ॥
ବେଦପୁରାଣ ଶାସ୍ତ୍ର ବାଣୀ । ଅଦ୍ୟରେ ପାଳନ୍ତି ତା ପୁଣି ॥
କହନ୍ତି ବେଦର ବଚନ । ଯେ ଧର୍ମ ମାର୍ଗ ଆଚରଣ ॥
ବାହ୍ୟ ନିତ୍ୟକର୍ମ କରନ୍ତି । ଭିତରେ ରାଗ ମାର୍ଗ ଚିନ୍ତି ॥
ଶ୍ରୀହରି ନାମ ଗୁଣିବାରେ । ଓଷ୍ଠ କମ୍ପଇ ଧୀରେ ଧୀରେ ॥
ପ୍ରେମରେ ଜର ଜର ଯେଣୁ । ପ୍ରଳାପ ପ୍ରାୟେ ବାକ୍ୟ ତେଣୁ ॥
ଉନ୍ମାଦ ଲାଗିଲା ପରାଯେ । ସ୍ଖଳନ୍ତେ ପାଦଗତ ଶୋହେ ॥
କ୍ଷଣକେ ହୋନ୍ତି ଶାନ୍ତ ଚିତ୍ତ । ଛଳେ ଡାକନ୍ତି ଜଗନ୍ନାଥ ॥
ବଟତଳେଣ ପଡ଼ିଥାନ୍ତି । ଜଗମୋହନରେ ଗଡ଼ନ୍ତି ॥
ପଦ୍ମୁ ଦ୍ୱିଗୁଣ ଧୂପରେ । ପଡ଼ିଣ ଥାନ୍ତି ପ୍ରେମଭରେ ॥
ଯେବେ ସେ ଚେତନା ଲଭନ୍ତି । ଆହା ଜଗନ୍ନାଥ ବୋଲନ୍ତି ॥
ରୁମ ଟାଙ୍କୁରୁଥାଇ ଦେହି । କଣ୍ଠ ଗଦଗଦ ସ୍ୱରଇ ॥
ରାଧା କୃଷ୍ଣ ଯୁଗଳ ମୂର୍ତ୍ତି । ଚିତ୍ତରୁ କ୍ଷଣେ ନ ଛାଡ଼ନ୍ତି ॥
କରନ୍ତି ନିର୍ମାଲ୍ୟ ଭୋଜନ । ଜଗନ୍ନାଥଙ୍କୁ ଦରଶନ ॥
ଜଗନ୍ନାଥ ନାମ ଶୁଣନ୍ତି । ଶୁଣେ ଜଗନ୍ନାଥ ବୋଲନ୍ତି ॥
ସ୍ପର୍ଶନ୍ତି ଶ୍ରୀଅଙ୍ଗ ତୁଳସୀ । ଲଗା ଚନ୍ଦନ ଅଙ୍ଗେ ଘଷି ॥
ଶ୍ରୀଅଙ୍ଗଧଣ୍ଡା ଅଙ୍ଗେ ଦେଇ । ସେବାକୁ ଥାନ୍ତି ଆଗହୋଇ ॥
ଯେତେକ ଯାତ୍ରା ମହୋତ୍ସବ । ତହିଁକି ହୋଇଥାନ୍ତି ଅଗ ॥
ତ୍ରିଧୂପ ପାଞ୍ଚ ଅବକାଶ । ସେବା କରନ୍ତି ପ୍ରଭୁପାଶ ॥
ଧୂପ ଭୋଗମାନଙ୍କୁ ଯହିଁ । ଆନନ୍ଦ ହେଉଥାନ୍ତି ତହିଁ ॥

ଧୂପ ଯେ ମଙ୍ଗଳ ଅଳତି । ମଙ୍ଗଳ ସପାବଳ ଦୀପନ୍ତି ॥
ଭୂପ ନୈବେଦ୍ୟ କର୍ମମାନ । ଅପଣେ କରନ୍ତି ଯତନ ॥
ସେବକଙ୍କ ସଙ୍ଗେ ମିଶିଣ । କରନ୍ତି ବେଳ ସେବାମାନ ॥
ଅବକାଶରେ ଯେଉଁ ବଷ୍ଣୁ । ସେ କଥା କରୁଥାନ୍ତି ଦିଶି ॥
ପଙ୍ଗରେ ଯେ ସେବା ବସ୍ତୁର । ତହିଁ ହୁଅନ୍ତି ଅଗ୍ରସର ॥
ମଙ୍ଗଳ ବନ୍ଦାପନା ଦେଖି । ଅନନ୍ଦ କରୁଥାନ୍ତି ଅଖି ॥
ଯାବତ ଜନପଦ ଥାନ୍ତି । ତାବତ ସେବାରେ ରହନ୍ତି ॥
ଜଗମୋହନ ଘର ସ୍ତୁହିଁ । ବୋଲନ୍ତି ମୋର ଧାମ ଏହି ॥
ମୁଁ ଏଥୁ ହୋଇଅଛି ଜାତ । କାଳେ ସେହବ ଏହି ନ.ଥ ॥
ଏଥିରେ ଅଛି ଖମ୍ଭଷୋଳ । ଏ ଷୋଳ ଦଳଟି କମଳ ॥
ଭଳପ ବଟକୁ ସ୍ନହ ଁଣ । ଝସ୍ତର କରୁଥାନ୍ତି ପୁଣ ॥
ଏଠାରେ ସହାସ କରନ୍ତି । କୋଷ୍ଟ ସଙ୍ଗି ଅପି ଖଟନ୍ତି ॥
ଭମଲାର୍ଯ୍ୟଙ୍କି ଯେ ଦେଖନ୍ତି । ତ୍ରିପୁର ବୋଲି ବଚ୍ଚରନ୍ତି ॥
ଗରୁଡ଼ ପଛେ ଯେବେ ଥାନ୍ତି । ଜଣାଣ ଥାନ ଏ ବୋଲନ୍ତି ॥
କନ୍ତ୍ରା ମହେଶ ଅହମୂଳେ । ସେଠାରେ ଥାନ୍ତି ଦେବଦଳେ ॥
ସ୍ୱର ଦ୍ୱାରେତ ସ୍ୱରବେଦ । ନାମ କରୁଛନ୍ତି ଅସ୍ବାଦ ॥
ଝଷ ଯୁବଷ ପସ୍ବହେଲେ । ତୀର୍ଥ କ୍ଷେତ୍ର ଟିପ ନ ବାଞ୍ଛିଲେ ॥
ଦେବ ତୀର୍ଥକ୍ଷେତ୍ର ଏ ଭ୍ରତ । ଏ ବାଞ୍ଛା ନ କରନ୍ତି ଚିତ୍ତ ॥
ସ୍ୱଙ୍ ଢବସ ଭରନ୍ତର । ଶ୍ରୀ ଜଗନାଥଙ୍କ ଯପୃର ॥
ଯେମନ୍ତେ ଜନକଦୁଲଣୀ । ସ୍ୱାମଙ୍କୁ ଅନ୍ୟକୁ ନ ଜାଣି ॥
ଯେମନ୍ତ ପର୍ବତ ଦୁହୃତା । ନତ୍ୟେ ଭ୍ରବନ୍ତି ପଶୁମଥା ॥
ଯେମନ୍ତ ସ୍ୱଧା ବୃନ୍ଦାବନ । ହୃଦେ ଭାବ ନନ୍ଦନନ୍ଦନ ॥
ଯେମନ୍ତ ଭୀଷ୍ମକ ନନ୍ଦନୀ । କୃଷ୍ଣଙ୍କୁ ଅନକୁ ନ ଜାଣି ॥
ତେମନ୍ତ ଦାସ ଜଗନ୍ନାଥେ । ହୃଦେ ଭାବନ୍ତି ଜଗନ୍ନାଥେ ॥
ମନ ବଚନ କର୍ତ୍ତବ୍ୟରେ । ବୁଦ୍ଧି ଉଦ୍ଧନ୍ତି ଅମ୍ପାଠାରେ ॥

ସ୍ତୁତ ଭାରତୀ ଦେହ ଘର । ବଳିଛି ଜଗନ୍ନାଥଠାର ॥
ଏଥେ ମୋ ଅଧିକାର ନାହିଁ । କାହେ ଭାବିବ ଅରେ ମୁହିଁ ॥
ଜଣକୁ ଦଉ ଯେବେ ଧନ । ସେ ତାହା ନୁଅଇ ଭୁବନ ॥
ଲେଉଟ ମୋହର ବୋଇଲେ । ଲୋକେ ହସନ୍ତି ତା ଶୁଣିଲେ ॥
ସେହି ପ୍ରକାରେ ଏହି ଦେଖ । ଜଗନ୍ନାଥଙ୍କୁ ଦଉ ଥାଅ ॥
ଅନ୍ୟଦେବଙ୍କୁ ନମସ୍କାର । କଲେ ବୈଠପ ଗତି ତାର ॥
ଏକ ଦେବଙ୍କୁ ଯେ ସେବଇ । ତାହା ସ୍ୱନିଷ୍ଠ ବୋଲି କହି ॥
ସେ ଯେବେ ଏଙ୍କୁ ଦୁଇଦେବ । ବୈଠପ ପରକ୍ରିଯୁ ଭାବ ॥
ଏଣୁ ନୃସିଂହ ରଘୁନାଥ । ଗୋକୁଳାନନ୍ଦ ନନ୍ଦସୁତ ॥
ବଦରୀପତି ଯଦୁପତି । ବିଷ୍ଣୁର ଅନନ୍ତ ମୂରତି ॥
ବ୍ରହ୍ମାଦି ଦଶଦିଗପାଳ । ରୁଦ୍ର ପାର୍ବତୀ ଗଣେଶ୍ୱର ॥
ଏ ବାଞ୍ଛା ହୃଦେ ନ ଘେନଲେ । ଏକା ଜଗନ୍ନାଥ ଭାବିଲେ ॥
ଜଗନ୍ନାଥେ ଟେକିଲେ ଶିର । କାହେ କରିବେ ନମସ୍କାର ॥
କୃଷ୍ଣସଦନ ବୃନ୍ଦାବନ । ଗୋପମଥୁରା ଅଯୋଧ୍ୟା ପୁଣ ॥
ଦ୍ୱାରକା କାଶୀ ଯେ ବଦରୀ । କୁରୁ ମେରୁ ବୈକୁଣ୍ଠ ପୁରୀ ॥
ଏ କ୍ଷେତ୍ରମାନେ ନ ଘେନନ୍ତି । ଏକା ଜଗନ୍ନାଥ ଭାବନ୍ତି ॥
ସମୁଦ୍ର ଗଙ୍ଗା ଯେ ଯମୁନା । ପୁଷ୍କର ଗୋଦାବରୀ ସିନା ॥
କାବେରୀ ସରଯୂ ଯେ ବ୍ରାହ୍ମୀ । ଗଙ୍ଗା ଯେ ସାଗରସଙ୍ଗମୀ ॥
ରାଧାକୁଣ୍ଡ ସ୍ୱାମୀ କୁଣ୍ଡ ଯେ । ରବିକୁଣ୍ଡ ଚନ୍ଦ୍ରକୁଣ୍ଡ ଯେ ॥
ଏଥିକି ବାଞ୍ଛା ସେ ନ କଲେ । ଏକା ଜଗନ୍ନାଥ ଭଜିଲେ ॥
ସକଳ ସ୍ଥାନହିଁ ଜାଣନ୍ତି । ଭକ୍ତିରୁ ଆନ ନ ଘେନନ୍ତି ॥
ଜାଣି ସର୍ବସ୍ଥାନ ତେଜିଲେ । ପ୍ରେମ ଭକ୍ତିରେ ନିମଜ୍ଜିଲେ
ଅହର ନିଶ୍ଚି ମଇଥୁନ । ଏ କଥା ନ ବାଞ୍ଛିଲେ ମନ ॥
ଏ ତିନ କର୍ମ ଏ ସଂସାରେ । ଅଛଇ ଅହେତୁ ଅଙ୍ଗରେ ॥
କୃଷ୍ଣ ଚରଣେ କର ଧ୍ୟାନ । ଭକ୍ତିରେ କରଣ ଶୁଦ୍ଧନ ॥

କୃଷ୍ଣର ପାଦପଦ୍ମ ରଜ । ତାହା କରନ୍ତୁ ପ୍ରତ୍ୟେ ଗ୍ରାସ ॥
ଶ୍ରୀ ଜଗନ୍ନାଥେ କର ରତ । ଭକ୍ତିରେ ବଢ଼ାଇଲ ପ୍ରୀତ ॥
ଏ ଭବ ତେଜର ଅମର । ଅନ୍ୟରଜ ଭ୍ରମ ସଂସାର ॥
ଦେଜସ୍ତୁ ଯେତେ ବ୍ୟାପାରଜ । ସ୍ନାନ ଭୋଜନ ବସ୍ତ୍ରାଦଣ ॥
ଏହା ଶ୍ରୀ ଜଗନ୍ନାଥ ଦେବ । ଏକାଗ୍ରଭାବେ ଥାନ୍ତୁ ଦବ ॥
ବ୍ରାହ୍ମଣ କୁଳର ଦସ୍ତୁର । ସମସ୍ତ କଲେ ପରିହାର ॥
ସ୍ନାହାନ ସନ୍ଧ୍ୟା ଜପ ହୋମ । ସନ୍ଧ୍ୟା ଦେବତା ପୂଜନ ॥
ବୈଶ୍ୱଦେବ ଅତିଥି ପୂଜା । ସକଳ କଲେ ପରତେଜ୍ୟା ॥
ପତିମାନଙ୍କ ଧର୍ମଯେତେ । ଆଦର ନ କଲେ ତା ଚିତ୍ତେ ॥
କ୍ଷାତ୍ରଣ କ୍ଷତ୍ରୀ ବୈଶ୍ୟଙ୍କର । ଯେ ବା ଯେ ବଦୂର ଅସ୍ତ୍ରର ॥
ଗୃହବର୍ଣ୍ଣ କର୍ମ ତେଜଲେ । ଏକା ଜଗନ୍ନାଥ ଭଜଲେ ॥
ପୁରାଣାଦ ବେଦ ଅଧ୍ୟାନ । ପୂର୍ବେ ଯେବା ଥିଲ୍ଲ ପଠନ ॥
ତାହା ଛାଡ଼ିଲେ ଭକ୍ତିବଳେ । ଅଭବ୍ୟ ଶ୍ରୀପାଦ କମଳେ ॥
ସ୍ୱବନ୍ଧୁ କୁଟୁମ୍ବ ସହିତେ । ପ୍ରିୟ ଅପ୍ରିୟ ବର୍ଗ ଯେତେ ॥
ଏ ସଙ୍ଗ ଦୂରେ ପରିହରି । ବହିଲେ କୂଟସ୍ଥ ଅଶେଷର ॥
ଆସନ ଯମ ନିୟମାଦ । ସମାଧି ଧ୍ୟାନ ଧାରଣାଦ ॥
ଯୋଗ ପ୍ରତ୍ୟାହାର ଯେ ହୋଇ । ଅଷ୍ଟାଙ୍ଗ ଯୋଗ ଏହା କହି ॥
ଏ ଯେ ଅଷ୍ଟାଙ୍ଗ ଯୋଗସାର । ଏକେ ଅଷ୍ଟ କଳା ବସ୍ତାର ॥
ଥାଉ ଅଟେ ତୁଣି ଦେଇ । ଷୋଷଠି କଳା ହୋଏ ଭଲେ ॥
ଏ ସର୍ବେ ମୁକତର ଲଭ । ଏଥିରେ ନାହିଁ ଭକ୍ତିଭାବ ॥
ଭକ୍ତି ମୁକ୍ତି ଦୁଇ ଭାବନ । ଜନ୍ମବା ଶୁଣ ସାଧୁଜନ ॥
ଯେ ପ୍ରାଣୀ ମୁକତ ଭାବନ୍ତି । ଅନ୍ତେ ବସ୍ତୁ ରୂପ ହୁଅନ୍ତି ॥
ତାହାଙ୍କ ଶ୍ରୀ ଜଗନ୍ନାଥେ । ନହରୂପେ ଭୋଗ ହୁଅନ୍ତି ॥
ନାନା ମୂର୍ତ୍ତିରେ ଖେଳୁଥାଇ । ମଣ୍ଡପ ମଧ୍ୟେ ପଞ୍ଚା ପାଇ ॥
କାଷ୍ଠ ପାଷାଣ ଧାତୁ ମାଟି । ସଂସାରେ ଜଡ଼ାଇଣ ମୂର୍ତ୍ତି ॥

ପୁରୁଷୋତ୍ତମ କ୍ଷେତ୍ରେ ନେଇ । ସିଂହାସନ ଯେବେ ଛୁଅଇଁ ॥
ଯେବଣ ଭକ୍ତ ମୁକ୍ତି ସାଧି । ତେହ୍ନେ ଯେଣ ଥାଇଣ୍ଟି ସିଦ୍ଧି ॥
ତାହାକୁ ଜଗତଜୀବନ । ସେହ୍ନ ମୂର୍ତ୍ତିରେ ଦିଅନ୍ତି ସ୍ଥାନ ॥
କାଷ୍ଠ ପାଷାଣ ମୂର୍ତ୍ତି ହୋଇ । ମଣ୍ଡପ ମଧ୍ୟେ ପୂଜା ପାଇ ॥
ବରଦେଲେ ବାସନା ପାନ୍ତି । ନ ଦେଲେ ବସି ଝୁହିଁଆନ୍ତି ॥
ଯେ ଦ୍ରବ୍ୟ ଅଗ୍ରତେ ମିଳଇ । ତାହା ସେ ନ ପାରନ୍ତି ଖାଇ ॥
ସୁଖେ ପୂଜାରେ ସୁଖୀ ହୋନ୍ତି । ନୋହିଲେ ବିକଳ ହୁଅନ୍ତି ॥
ସେ ପୁଣ ଦୁର୍ବସେବା ବଟଳ । ଭୋଗ ଭୁଞ୍ଜଇ ଏ ଗସ୍ଥଳେ ॥
ଯେ ମୁକ୍ତି ସିଦ୍ଧିକି ଲଭନ୍ତି । ଶ୍ରୀଅଙ୍ଗେ ଲୀନ ହୋଇଯାନ୍ତି ॥
ବ୍ରହ୍ମରେ ପ୍ରବେଶ ହୁଅନ୍ତି । ଦୁଃଖ ସାଗର ନ ଲଭନ୍ତି ॥
ମୁକ୍ତି ଦୁଇ ପ୍ରକାର ମାନ । ଏରୂପେ ହୋଇଲା ସଞ୍ଚିନ ॥
ଭକ୍ତି ଦୁଇମତ କହଇ । ସିଦ୍ଧାଙ୍ଗେ ଶୁଣ ମନ ଦେଇ ॥
କେହୁ କେହୁ ଭକ୍ତି କରନ୍ତି । ଅନ୍ତେ ଲେଉଟି ଜନ୍ମ ପାନ୍ତି ॥
ପୁଣ ସେବୁଥାନ୍ତି ପଦ୍ମର । ଏରୂପେ ସର୍ବଠାରେ ସାର ॥
କେହୁ କହନ୍ତି ହିଁ ଭକ୍ତି । ଅନ୍ତରେ ସେ ନିତ୍ୟେ ମିଳନ୍ତି ॥
ନିତ୍ୟଙ୍କରେ କୃଷ୍ଣ ଭଜନ୍ତି । ଦୁଃଖ ସମ୍ବନ୍ଧ ନ ଜାଣନ୍ତି ॥
ଏଣୁ ଏ ଭକ୍ତିରେ ବିଶ୍ୱାସ । କହଇଲେ ଜଗନ୍ନାଥ ଦାସ ॥

ଶ୍ଲୋକଃ ।

ସତ୍ୟେ ତୁ ଜପଯଜ୍ଞୀ ଚ ତ୍ରେତାୟାଂ ଦାନ ମୁଚ୍ୟତେ ।
ଦ୍ୱାପରେ ପରିଚର୍ଯ୍ୟା ଚ କଳୌ ତୁ ହରିକୀର୍ତ୍ତନଂ ॥

ସତ୍ୟରେ ଜପ ଯଜ୍ଞ ହୁଇ । ତ୍ରେତାଯୁଗରେ ଦାନରେ ପାଇ ॥
ଦ୍ୱାପରେ ପାଦର ସେବନ । କଳିଯୁଗେ ନାମ କୀର୍ତ୍ତନ ॥
ଏରୂପେ ଚାରି ଯୁଗାନ୍ତରେ । ଭଜ ଲଭନ୍ତି ଭକ୍ତି ନରେ ॥
ସତ୍ୟରେ ଅବଧୂତ ବେଶ । ତ୍ରେତାରେ ସ୍ୱରୂପ ସନ୍ନ୍ୟାସ ॥
ଦ୍ୱାପରେ ବ୍ରହ୍ମବଶ ସାଧୁ । କଳିଯୁଗରେ ବଇରାଗୀ ॥

ଏଣୁ ବୈଷ୍ଣବୀ ବେଶ ହେଲେ । ହୋଇ କୌପୁନ ଅଗ୍ରଧରେ ॥
ଜଳଧି ନିର୍ମ ଦୂର କଲେ । ସ୍ୱଗମାର୍ଗକୁ ଅଗ୍ରଧରେ ॥
ଷ୍ଟଲେ ସର୍ବ କର୍ମମାନ । ଏକାଗ୍ରେ କଲେ ଉତ୍ସନ ॥
ହରେ ଘମ ଶୋଡ଼ଶ ଜନ୍ମ । ଜପ କରନ୍ତ ଅନାବ୍ରତ ॥
ପ୍ରଭାତୁଁ ଉଠି ପ୍ରତିଦନ । ସାରନ୍ତ ନତ୍ୟକର୍ମମାନ ॥
ମାଳା କଣ୍ଠେ ଧରିମନ୍ଦର । ଶଙ୍ଖ ଚକ୍ର କାଷ୍ଠ ବାହ୍ୱର ॥
ଯାହାନ୍ତ ଅବକାଶ ହେଲେ । ସ୍ୱାମୀ ଯେ ସଣନ୍ତ ଦେଉଳେ ॥
ପ୍ରଭୁଙ୍କ ସେବାରେ ମିଶନ୍ତ । ଖଣ୍ଟଣୀ ସେବାରେ ରହନ୍ତ ॥
ନିଧୂପ ପାଞ୍ଚ ଅବକାଶ । ଯେ କାଳେ ଯେ ଅବା ପ୍ରବେଶ ॥
ବଡ଼ସିଂହାର ପରଯନ୍ତ । ଥାନ୍ତ ସେ ପ୍ରଭୁଙ୍କ ଅଗ୍ରତ ॥
ପଲଙ୍କେ ପ୍ରଭୁଙ୍କୁ ଶୁଆଇ । ତେବେ ମଠକୁ ଯାନ୍ତ ସେହ ॥
ଅମ୍ବାଦକ୍ଷଣେ ତ୍ଭୋଗ ଶନ୍ତ । ଅବଢ଼ା ସଙ୍ଗେ ନେଇ ଥାନ୍ତ ॥
ପାଞ୍ଚସାତ ସେ ବୈଷ୍ଣବମାନ । ନର୍ମାଲ୍ୟ କରନ୍ତ ସେବନ ॥
ସତେ ବସନ୍ତ ହଜାଗର । ଭଜନ୍ତ ମନ୍ତ୍ରବଜ ସାର ॥
ପୁଣି ରହନ୍ତି ଏହମତ । ଏମନ୍ତେ କେତେଦନ ଅନ୍ତ ॥
ସେକାଳେ ବଡ଼ ବଳୀସ୍ୱର । ପ୍ରତାପ ରୁଦ୍ର ନୃପବର ॥
ପୁଛିଲ ସେବକଙ୍କୁ ସ୍ୱର୍ହେ । ପୁରୁଷୋତ୍ତମେ ଛନ୍ତ କହ ॥
କଷ୍ଟୁହା ବଇରାଗୀମାନ । ତାଙ୍କର ଶୁଣିଲ ଲକ୍ଷଣ ॥
ଏ ଜଗନ୍ନାଥ ଦାସଙ୍କର । ବୁଝିଣ କେଷ୍ଟୁ ତାଙ୍କର ॥
ଶକ ଅଶୁଦ୍ଧ ସେବାଥିବ । ବୁଝିଣ ଗ୍ରମୁରେ କହିବ ॥
ସୈନ୍ଦନ୍ ମଠଘାଖେ ସ୍ୱତ । ସଜ ସେବକେ ଜଟିଥାନ୍ତ ॥
ଏମନ୍ତେ ରଜନୀ ଅର୍ଦ୍ଧରେ । ସ୍ୱାମୀ ଦ୍ୱାରନ୍ଦ୍ର ଦକେକଲେ ॥
ମଠରେ ପ୍ରବେଶ ହୁଅନ୍ତେ । ଦେଖିଲ କନ୍ୟାହେଲେ ଅଗ୍ରତେ ॥
ଲାବଣ୍ୟଷ୍ଟା, ଏବେ ସେ ଯୁବତୀ । ଦିବ୍ୟଅଳଙ୍କାରେ ଶୋଭନ୍ତ ॥
ତା ତୁଲ୍ୟେ ନ ମିଳିବ ମହୀ । ଯେ ବସ୍ତ୍ର ପିନ୍ଧିଛନ୍ତ ସେହ ॥

ତାଙ୍କ ରୂପକୁ ଅନୁପମ । ଦେବଯୁବକ ନୋହେ ସମ ॥
ବେଗେ ଆସନେ ବସାଇଲେ । ବେନି ଚରଣ ଧୋଇ ଦେଲେ ॥
ସୁହଉତରେ କର ସ୍ନାନ । ତହିଁ ବସାଇଲେ ବହନ ॥
ଶ୍ରୀ ଜଗନ୍ନାଥଙ୍କର ଦେଉଳ । ଯେ ଦ୍ରବ୍ୟ ନିଯୋଗିଲେ ଅଗ ॥
ଧୋବଣୀ ଦେନ ବେଜକରେ । ଦୁକୂଳ ଥିଲେ ଧୀରେ ଧୀରେ ॥
ସ୍ୱାମିଙ୍କ ଭୋଜନ ଅନ୍ତରେ । ଅତମନକୁ ଜଣାଇଲେ ॥
ଦିଆଇ ପାଲଙ୍କ ବସନ । ଧୋଇ ଶୁଖାଇଲେ ବଦନ ॥
ଶେଷ ଅନ୍ନ ବାଟି ଭୁଞ୍ଜିଲେ । ପାଦ ଧୋଇ ଆଣି ଥୋଇଲେ ॥
ବ୍ୟାଘ୍ର ଚର୍ମ କୁଶ ଆସନ । ଦୁଇ ଧଉତ ବସ୍ତ୍ରମାନ ॥
ସ୍ୱାମୀ ବସିଲେ ତହିଁ ଯାଇ । ମନ୍ତ୍ରରାଜ ଜପିବା ପାଇଁ ॥
ଜଗନ୍ନାଥଙ୍କ ଛଡାମାଳ । ଶ୍ରୀଅଙ୍ଗେ ଚନ୍ଦନ କରାଳ ॥
ସ୍ୱାମିଙ୍କ ଅଙ୍ଗେ ତାହା ଦେଲେ । ବେଣୀ ଦେବଣ ବେହ୍ନିଲେ ॥
ମନ୍ତ୍ରରାଜ ଜପିବା ଅର୍ଥେ । ସ୍ୱାମୀ ଯେ ମନନ ଭୁରତେ ॥
ସେ ବେନି ଜାଣି ଏ ଚରିତ । ତକ୍ଷଣେ କଲେ ଦଣ୍ଡବତ ॥
ସ୍ୱଧା ମେଧା ବେନିଦାସୀ । ଅଟନ୍ତି ନିତ୍ୟ ଅଭିଳାଷୀ ॥
ନିତ୍ୟରେ ସେବା କରୁଥିଲେ । ସ୍ୱାମୀ ମର୍ତ୍ତ୍ୟେ ଜନ୍ମ ହୋଇଲେ ॥
ସେବା କରିବାର କ୍ରମନ୍ତେ । ଅଛି ମିଳନ୍ତି ନିତ୍ୟେ ନିତ୍ୟେ ॥
ସେବା ପଦ୍ଧତି ନ କରନ୍ତି । ସେବା କରି ଲେଉଟି ଯାନ୍ତି ॥
ମନ୍ତ୍ରରାଜ ସମାନ ହୋଇ । ସଂସାର ମଧ୍ୟେ ମନ୍ତ୍ର ନାହିଁ ॥
ସାକ୍ଷାତ ବ୍ରହ୍ମ ନିରାକାର । ଶ୍ରୀରାଧା କୃଷ୍ଣ କଳେବର ॥
ଅନ୍ୟ ମନ୍ତ୍ର ଯୁଗପର୍ଯ୍ୟନ୍ତେ । ଭଜନେ ଯେ ଭକ୍ତି ପ୍ରାପତେ ॥
ମନ୍ତ୍ରରାଜ ଥରେ ବୋଇଲେ । ସେ ଭକ୍ତି ବାଗ ହୋଇ ମିଳେ ॥
ଅନ୍ତର ଅଛି ପ୍ରେମ ଗୁଣ । ମୂର୍ଚ୍ଛି ନ ପାରି ରାଧା କୃଷ୍ଣ ॥
ସେ ରାଧାକୃଷ୍ଣ ଅଙ୍ଗ ଯେଣୁ । ସେ ମନ୍ତ୍ର ଜପୁଥାନ୍ତି ତେଣୁ ॥
ମନ୍ତ୍ରରାଜ ସ୍ମରଣୁ ଥାନ୍ତି । ପୂର୍ବ ଅଙ୍ଗରେ ରହି ପ୍ରୀତି ॥

ଯେମନ୍ତ ମୋହନ ମନ୍ତ୍ରର । ଜପନ୍ତେ ବଶ ହୁଅନ୍ତି ନର ॥
ଜପନ୍ତେ ମନ୍ମଥଙ୍କ ପୁଣ । ଜପନ୍ତେ ବଶ ରାଧା କୃଷ୍ଣ ॥
ଜାଣି ନ ଜାଣି ଯେ ମନୁଜ । ଅକ୍ଷରେ ବୋଲେ ମନ୍ମଥଜ ॥
ହୃଦେଷ୍ଟା ହେବ ବୋଲିଣ । ଈଶ୍ୱର କରଇ ଯେ ମନ ॥
ପ୍ରେମ ଭକତ ସେ ଲଭଇ । ରାଧା କୃଷ୍ଣ ପାଦେ ମିଳଇ ॥
ଯେମନ୍ତେ ପ୍ରଦୀପ ଦେଖାନ୍ତେ । ଅନ୍ଧାର ଫାଟଇ ତୁରିତେ ॥
ଯେମନ୍ତ ଆଦିତ୍ୟ ଉଦୟେ । ସର୍ବ ଅଦୃଶ୍ୟ ଦୃଶ୍ୟ ହୋଏ ॥
ତେମନ୍ତ ମନ୍ମଥଙ୍କ ଶୁଣି । ମାୟା ସଂସାରୁ ତରେ ପ୍ରାଣୀ ॥
ବୋଲଇ ବିପ୍ର ଦିବାକର । ସେ ମନ୍ମଥଙ୍କେ ଆଶା ମୋର ॥

ଇତି ଶ୍ରୀ ଜଗନ୍ନାଥାମୃତେ ଶ୍ରୀ ଅତିବଡ଼ ଜଗନ୍ନାଥ ଦାସ ଗୋସାଇଁ
ଅନୁକ୍ରମଣି ନାମ ଦଶମୋଽଧ୍ୟାୟଃ ।



## ଏକାଦଶ ଅଧ୍ୟାୟ ।

ଶୁଣ ସୁଜନେ ଦେଇ ଚିତ୍ତ । ରଜନୀ ହୋଇଲା ପ୍ରଭାତ ॥
ରାଜସେବକେ ଜଗିଥିଲେ । ଏ କଥା ସମସ୍ତ ଦେଖିଲେ ॥
କହିଲେ ରାଜ ଅଗ୍ରେ ଯାଇଁ । ରାଜା ଯେ ଦେବାର୍ଚ୍ଚନେ ରହି ॥
ହେ ଦେବ ସାବଧାନ କର । ଜଗନ୍ନାଥ ଦାସ ଈଶ୍ୱର ॥
କି ବୁଝି ଦେବ ଚଇତନ୍ୟ । ଦେଲେକ ଅତି ବଡ଼ ନାମ ॥
ବୈଷ୍ଣବ ଯୁବତୀ ରହକାଳେ । ମିଳିଲେ ଦାସଙ୍କର ଅଳେ ॥
ତହୁଁ ସୁନ୍ଦର କେବା ହୋଇ । ତାହାର ଯୁବତୀ ସେ ଦୁଇ ॥
ତାଙ୍କ ଚରଣ୍ଣ ଯେବା ଆଇ । ସମସ୍ତ ଦେଖାଇଲେ ସେହି ॥
ନର୍ତ୍ତନ କାଳେ ଥିଲେ ସେହି । କହିଲୁ ଆମ୍ଭ ଦୋଷ ନାହିଁ ॥
ଶୁଣି ବିଚକ୍ଷଣ ନୃପବର । ବୋଇଲେ ହୁଅ ସର୍ବେ ସ୍ଥିର ॥
ମୋତେ ଦେଖାଇ ପାରିଯେବେ । ତୁମ୍ଭ ବଚନ ସତ୍ୟ ତେବେ ॥

ତୁମ୍ଭ ବଚନ ସତେ ଯିବା । ମହାପ୍ରଭୁଙ୍କୁ କେମନ୍ତେ ଦଣ୍ଡିବା ॥
ବିଶ୍ୱମ୍ଭର ଭଗବାନ । ସ୍ୱରୂପେ ଦେବ ଚଇତନ୍ୟ ॥
ଅତେବଡ଼ ବୋଲଣ ବାଣୀ । ଶ୍ରୀମୁଖେ ଅଛନ୍ତି ବଖାଣି ॥
ତୁମ୍ଭ ବଚନେ ମୁଁ କେମନ୍ତେ । ଦଣ୍ଡିବାକୁ ହେବ ସାମର୍ଥେ ॥
ଆଜ ସଂଧରେ ଅମ୍ଭେ ଯିବା । ପ୍ରତ୍ୟକ୍ଷେ ଲୋଚନେ ଦେଖିବା ॥
ଏମନ୍ତ କହି ନୃପବର । ଗଲେ ଦର୍ଶନ ଅନନ୍ତର ॥
ସେଠାରେ ସ୍ୱାମୀଙ୍କି ଦେଖିଲେ । ଛଡ଼େଇ ଭକ୍ଷଣ କରୁଥିଲେ ॥
ଦେଖିଲେ ବ୍ରହ୍ମମୂର୍ତ୍ତି ପ୍ରାୟେ । ଝଲଇ ସ୍ୱାମିଙ୍କର କାୟେ ॥
ପ୍ରଚଣ୍ଡ ଅଗ୍ନି ତେଜ ପ୍ରାୟେ । ରାଜା ଚକ୍ଷୁକୁ ପୀଡ଼ା ହୋଏ ॥
ଦେଖି ଆଶ୍ଚର୍ଯ୍ୟ ରାଜା ହେଲା । ଚରଣେ ଦଣ୍ଡବତ କଲା ॥
ଜଗନ୍ନାଥଙ୍କ ଦରଶନ । କରି ବହେଜ କଲେ ରାଜନ ॥
ଏମନ୍ତେ ରଜନୀ ପ୍ରବେଶ । ମହାପ୍ରଭୁଙ୍କ ସେବା ଶେଷ ॥
ପ୍ରଭୁଙ୍କୁ କରାଇ ଶୟନ । ନୃପ୍ତ ଯେ ମଠକୁ ଗମନ ॥
ଅର୍ଦ୍ଧରଜନୀ ଅଛି ହୋଇ । ମଠରେ ବିଜେକଲେ ଯାଇଁ ॥
ପୂର୍ବସୁବର୍ଣ୍ଣ ବେଣୁଜନ । ସେବକଲେ ପୂର୍ବର ବିଧାନ ॥
ରାଜ ସେବକେ ଜଗିଥିଲେ । ଧାଇଁ ରାଜାଙ୍କୁ ଜଣାଇଲେ ॥
ହେ ଦେବ କର ସାବଧାନ । ଜଗନ୍ନାଥ ଦାସଙ୍କ ଚିହ୍ନ ॥
ପ୍ରଭୁତେ କହିଥିଲୁ ଯାହା । ଏବେ ଦେଖାଇ ଦେବୁଁ ତାହା ॥
ଅପୂର୍ବ ଏ ବେଣୁ ସୁବର୍ଣ୍ଣ । ଦାସଙ୍କ ସଙ୍ଗତେ ଅଛନ୍ତି ॥
ରାଜା ମୁହୂର୍ତ୍ତେ ସ୍ଥିରହେଲେ । ଏତେକର୍ମ ହେଲା ବୋଇଲେ ॥
ଅନଳଙ୍କ ଅଙ୍ଗେ ଏ ବାଣୀ । ଅମ୍ଭ ହୃଦେସୁ ତାହା ଜାଣି ॥
ତୁମ୍ଭ ବଚନ ସତ୍ୟ ନୋହି । ଦେଖିଲେ ଅମ୍ଭେ ପ୍ରତେ ଯାଇ ॥
ଏମନ୍ତ କହି ନୃପବର । ଗମନ କରିଲେ ସତ୍ୱର ॥
ମିଳିଲେ ସ୍ୱାମିଙ୍କ ଆଶ୍ରମ । ସମସ୍ତେ ହୋଇଲେ ମହନ ॥
ସ୍ୱାମୀ କରୁଛନ୍ତି ଭୋଜନ । ପାତ୍ରେ ଅଛନ୍ତି ବେଣୁଜନ ॥

ରାଜା ଦେଖିଲେ ତା ନୟନ । ପାରୁଷଦାଦ ଯେତେ ଜନ ॥
ରାଜା ବଚନ ବଜ୍ର ହେଲେ । ଅବଳଙ୍କେ କଳଙ୍କ କଲେ ॥
ଏମନ୍ତେ ରାଜାଙ୍କ ବିଚାର । ସ୍ୱାମୀ ଜାଣିଲେ ତା ହୃଦର ॥
ସ୍ୱଭାବେ ଅନ୍ତର୍ଯାମୀ ପୁଣ । ଜାଣନ୍ତି ସର୍ବ ମନ ଗୁଣ ॥
ବେଗେ ନିର୍ମାଲ୍ୟ ସେବା ସାରୁ । ସବୁରେ ହସ୍ତକୁ ପ୍ରକ୍ଷାଳ ॥
ବସିଲଠାରୁ ନ ଉଠିଲେ । ଉଚ୍ଚେ ଏମନ୍ତ ଆଜ୍ଞା କଲେ ॥
ହେ ରାଜା ରାଣୀଙ୍କି ତୁମ୍ଭର । କେ ସେବା କରେ ଅନ୍ତଃପୁର ॥
ସ୍ତ୍ରୀଙ୍କି ସ୍ତ୍ରୀ ସେବା କରେ । ଏ କଥା ଅଛି ସର୍ବପରେ ॥
ମୁହିଁ ଯେ ଜଗନ୍ନାଥ ଦାସୀ । ଏ ବେଳ ନିତ୍ୟ ଅଭିଳାଷୀ ॥
ମୋତେ ଏ ନିତ୍ୟେ ସେବାକର । ଜଗିଣ ଥାଅ ଦଣ୍ଡଧାସ୍ୱ ॥
ସେବାସାରୁ କେଣିକ ଯାଇ । ପାରଲେ ଧରୁ ନଅ ତୁହ୍ମ ॥
ଏ ବାକ୍ୟ ଶୁଣି ରାଜା ଲୋକେ । ଦୃଢେ ଜଟିଲେ ଗୁରୁପାଖେ ॥
ରାଜାହୁଁ ଦ୍ୱାରେ ବଟଜ କଲେ । କନ୍ୟାଙ୍କୁ ପ୍ରତ୍ୟକ୍ଷେ ଦେଖିଲେ ॥
ଦିବ୍ୟ ସୁନ୍ଦର ତନୁ କାନ୍ତି । ମନୁଷ୍ୟ ଅଙ୍ଗ ସେ ନୁହନ୍ତି ॥
ଏମନ୍ତେ ସେ ବେନି ଯୁବତୀ । ମଠରୁ ବଷସ୍ତୁ ସାରନ୍ତି ॥
ସ୍ୱାମୀଙ୍କି ଦଣ୍ଡବତ ହେଲେ । ବଜ୍ଳ ପ୍ରାସ୍ତେ କେଣେ ଗଲେ ॥
ରାଜା ସନ୍ଧତେ ପାଙ୍କ ଯେତେ । ଉଦ୍ୟମ କଲେ ବହୁମତେ ॥
କ୍ଷେଷର ଲେଖ ନ ପାଇଲେ । ବଡ଼ ସେ ଆଶ୍ଚର୍ଯ୍ୟ ହୋଇଲେ ॥
ଏମନ୍ତ ଦେଖି ନୃପବର । ପ୍ରତାପରୁଦ୍ର ବଳାସ୍କର ॥
ମହତ୍ୱ ଆଶ୍ଚର୍ଯ୍ୟ ଦେଖିଣ । ଚରଣେ ପଡ଼ିଲା ତକ୍ଷଣ ॥
ବୋଲନ୍ତି ନମୋ ନମୋ ବାଣୀ । ଜମ୍ବୁ ଭୁ ଅଚବତ ପୁଣି ॥
ଯାହାକୁ ଚୈତନ୍ୟ ଗୋସାଇଁ । ଅଛବକୁ.ର ଆଜ୍ଞାହୋଇ ॥
ପୂତ କଲନ୍ତେ ନୃପବର । ରଜନୀ ହୋଇଲା ପ୍ରସର ॥
ସ୍ୱାମୀହିଁ ପଲ୍ଲୁ ଉଠିଲେ । ସଜାଙ୍କ ଅଗ୍ରେ ଉଭା ହେଲେ ॥
ବୋଇଲେ ସଜାମୁଖ ଶୁହିଁ । ଜଗନ୍ନାଥଙ୍କ ଦାସୀ ମୁହିଁ ॥

ପୂର୍ବେ ପୁରୁଷ ଅଙ୍ଗେ ଥିଲ । ପ୍ରେମଭାବରେ ସ୍ତ୍ରୀ ହେଲ ॥
ଦେଖି ଅଦ୍ଭୁତ ଦୃଶ୍ୟ ମୋର । ଚିନ୍ତା କୌତୁକରେ ଭୂଧର ॥
ଏତେ କହି କୌତୁକ ହେଇ । ରାଜା ଅଗ୍ରେ ଦେଲେ ପଠାଇ ॥
ଦେଖିଣ ରାଜା ଅଚମ୍ଭିତ । ପୁଣିହିଁ କଲା ଦଣ୍ଡବତ ॥
ସାମନ୍ତ ପାତ୍ର ଯେତେ ଥିଲେ । ସମସ୍ତେ ଭୂମିରେ ପଡ଼ିଲେ ॥
ଉଠି ଯୋଡ଼ଣ କରକର । ସ୍ତୁତି କରଇ ନୃପବର ॥
ଶ୍ରୀ ଅତିବଡ଼ ଜଗନ୍ନାଥ । ଦାସ ନାମ ତୁମ୍ଭର ସତ୍ୟ ॥
ଶ୍ରୀପତି ଭଜନକୁ କର । ଯୁଗଳ କଯୋଡ଼ ଛତୋର ॥
ବେଦ ପୁରାଣରେ ପ୍ରମାଣ । ନାମ ରାମାଦ ସଂକୀର୍ତ୍ତନ ॥
ଶ୍ରୀ ରାଧାକୃଷ୍ଣଙ୍କ ବଚନ । ତୁମ୍ଭେ ଯେ ପାଳନ୍ତ ପ୍ରମାଣ ॥
ଶ୍ରୀରାଧା ଭାବ ହୃଦପୁର । ପୁରୁଷଅଙ୍ଗ କଲ ଦୂର ॥
ପୁରୁଷ ଅଙ୍ଗେ ସ୍ତ୍ରୀ ହୋଇ । ଏ କଥା ଶୁଣା ଦେଖା ନାହିଁ ॥
ସତାଇଶ ଧନ ପୁରୁଷ । ତନଧନ ସ୍ତ୍ରୀଙ୍କ ବେଶ ॥
ପୂର୍ବେ ମହନ୍ତ ମାନେ ଥିଲେ । ଏ ଗତି କେହି ନ ଲଭିଲେ ॥
ଧନ୍ୟ ଅମୃତ ଚନ୍ଦ୍ରବେଣ । ଦେଖିଲୁ ପ୍ରେମାଙ୍ଗ କାମିନୀ ॥
ସାକ୍ଷାତ ରାଧା ଅବତାର । ଜଗନ୍ନାଥ ନାମ ଯାହାର ॥
ଏମନ୍ତ ସ୍ତୁବନ୍ତେ ରାଜନ । ମିଳିଲେ ସର୍ବ ସାଧୁଜନ ॥
ରାଜା କହିଲେ ପଣ୍ଡିତଙ୍କୁ । ଆଶ୍ଚର୍ଯ୍ୟ ମଣିଲୁ ମନକୁ ॥
ପୁରୁଷ ଅଙ୍ଗେ ଜଗନ୍ନାଥ । ଦାନେସ ହୋଇଲେ ସ୍ତ୍ରୀମତ ॥
ସେ ବାକ୍ୟ ସାର୍ବଭୌମ ଶୁଣି । ବୋଇଲେ ଶୁଣ ନୃପମଣି ॥
ଯେ ଜଗନ୍ନାଥ ଦାସ ସେହି । ତନ୍ତ୍ର ଭକ୍ତି ହୃଦେ ଭାବନ୍ତି ॥
ମୂର୍ତ୍ତ ଅଙ୍ଗରେ ରାଧା ଭାବ । ସ୍ତ୍ରୀଙ୍କ ଗତେ ଏତେବ ଲଭ ॥
ମନୁଷ୍ୟ ଶରୀରକୁ କହ । ଏ ଉକ୍ତି କେହି କଲ ନାହିଁ ॥
ପୁରୁଷ ଦେହ ହେଲେ ନାଶ । ମହାନ୍ତ ଭାବକୁ ବରଷ ॥
ଯେ ଜଗନ୍ନାଥ ଦାସ ଏହି । ସାକ୍ଷାତେ ରାଧା ରୂପ ହୋଇ ॥

ତଥାପି ଦେହ ବହୁ ଏହୁ । ମହାପୁରୁଷ ଭାବ କହୁ ॥
ମହିମା ବଢାଇବା ଅର୍ଥେ । ବଟୋବଶ ହେଲେ ଯୁକତେ ॥
ବୈଷ୍ଣବ ପଦ ଶିଖି ଅର୍ଥେ । ଅସାଧ୍ୟ କରୁ ମନ ଶତ୍ରେ ॥
ମନୁଷ୍ୟ ମଧ୍ୟେ ଦିଶି ଦେହ । ଉତ୍ତମ ଭକ୍ତି ଯେ ସାଧଇ ॥
ଏ ସାର୍ବଭୌମଙ୍କ ଉତ୍ତର । ପୁଣ କହିଲେ ନୃପବର ॥

ଶ୍ଲୋକଃ ।

ଗଲେ ବାସାସାରଂ ପୁଲକଚିଜିତାଂ ଗୀପକୁଷ୍ମନଂ
ହରେ ସମେତ୍ୟୁଚ୍ଚୈର୍ନୃତ୍ୟରନୁକ୍ରନ୍ଦନ୍ତଂ ସୁମଧୁରଂ ।
ଜଗନ୍ନାଥଂ ବନ୍ଦେ ଜଗତଶରଣଂ ପାତକହରଂ ।
ଭଜନ୍ତଂ ଭକ୍ତାନାଂ ସକଳସୁଖଦଂ ପ୍ରେମରସିକଂ ॥

ଗଳାରେ ଯାର ନାମ ଡୋର । ବଟଜ ଭାବ ମନୋହର ॥
କଦମ୍ବ ପୁଷ୍ପ ପ୍ରାୟେ ହୋଇ । ପ୍ରେମରେ ରୋମ ଟାଙ୍କୁରଇ ॥
ଉଚ୍ଚେଶ ହରି ନାମ ଗାନ୍ତି । ପୁନଃ ପୁନ କରୁ ଧାବନ୍ତି ॥
ଅଧର କମ୍ପିଲି ପରସ୍ତୁ । ହରି ନାମରେ ଶୋଭାପାଏ ॥
ଯେ ଅତ ବନ୍ଧୁ ଜଗନ୍ନାଥ । ତାଙ୍କୁ ମୁଁ ବନ୍ଦଇଁ ଭୁରତ ॥
କୁରୁକ୍ଷେତ୍ରେ ଯା ବିହାର । ଶ୍ରୀ ରାଧାଅଂଶେ ଅବତାର ॥
ସକଳ ସୁଖ ଯୋଗ୍ୟ ଯେହୁ । ମୋହର ତାଙ୍କ ପାଦେ ରହୁ ॥
ପ୍ରତାପରୁଦ୍ର ନୃପବର । ସ୍ତୁତି କଲା ଏଥୁ ଅପାର ॥
ଛନ୍ତେ ଗାଣ୍ଡି ଖ୍ୟାତ କଲା । ଧଜ ନେତରେ ସଜାଗଲା ॥
ଅତି ବହୁଙ୍କ କଥାମାନ । ନିତ୍ୟେ କହୁଥାନ୍ତି ସଜନ ॥
ଶ୍ରୀ ଚଇତନ୍ୟ ଅଜ୍ଞା ପୂର୍ବେ । ପୁଣ ମହିମା ଦେଖ ଏବେ ॥
ଏମନ୍ତେ କଣ୍ଠଧନ ଗଲା । ଏବଞ୍ଚ ବେଳ ମହିମା ହେଲା ॥
କାଶୀସ୍ୱମ ବୋଇତ କର୍ଣ୍ଣ । ବହିତ ପଣେ ସାମରଥା ॥
ଶ୍ରୀ ଜଗନାଥ ଦରଶନେ । ଅଇଲେ ଶ୍ରୀ କ୍ଷେତ୍ର ଉଦ୍ଧେ ॥
ଜଗନ୍ନାଥ ଦର୍ଶନେ ଥିଲା । ପଥରେ ଗଜାଙ୍କୁ ଦେଖିଲା ॥

ଗନ୍ଧରାଜ ଚନ୍ଦନ ଥିଲା । ରାଜାଙ୍କୁ ଦରଶନୀ ଦେଲା ॥
କର୍ପୂର ଚନ୍ଦନ କସ୍ତୁରୀ । ଶଏକ ବାସ ଦ୍ରବ୍ୟ ଭରି ॥
ଦେଶଦେଶ ସ୍ଥାନଅଛେ ଯେତେ । ସେ ସେବା ଦ୍ରବ୍ୟ ଅଛି ହୋଇ ॥
ତପତ ଘୃତ ଫୁଟୁଥିବ । ତହିଁରେ ଘୋର ପକାଇବ ॥
ତକ୍ଷଣେ ଘୃତ ବସି ଯାଇ । ତହିଁରେ ହଂସ ବାହାରଇ ॥
ସାଧବ ସର୍ବ ସମ୍ଭାଳଇ । ଦଇବ ରାଜାଙ୍କୁ ମିଳଇ ॥
ଜଗନ୍ନାଥଙ୍କୁ ଆଣିଥିଲା । ରାଜାଙ୍କୁ ଦେଖା ତାହା ଦେଲା ॥
ସେ ଗନ୍ଧ ଦେଖି ନୃପବର । ବିଜୟେ କରିଲେ ନବର ॥
ଧନେ ସେ ଗନ୍ଧ ଦେଖିଗଲେ । ସ୍ୱାମିଙ୍କି ନେଇ ସମର୍ପିଲେ ॥
ରାଜା ବଢ଼େ ଭଜନବର । ସ୍ୱାମୀ ସେ ଗନ୍ଧ ଦେଖି ହର ॥
ଅମୂଲ୍ୟ ସେ ଗନ୍ଧ ଅଟଇ । ସ୍ୱାମୀ ତା ଭଜମଠେ ନେଇ ॥
ସ୍ୱମନ୍ତ୍ର କରି ତା ଘୋଷିଲେ । ନିଜ କାନ୍ଥରେ ଲିପିଦେଲେ ॥
ରାଜ ସେବକେ ତା ଦେଖିଲେ । ରାଜାଙ୍କୁ ଯାଇ ଜଣାଇଲେ ॥
ଯେ ଗନ୍ଧ ଦେଲେ ନୃପବର । ସ୍ୱାମୀ ତା ଲେପିଲେ କାନ୍ଥର ॥
ଏ କଥା ରାଜା ଶୁଣିଥିଲେ । ରାଜାଦର୍ଶନକୁ ଆଇଲେ ॥
କରି ଜଗନ୍ନାଥ ଦର୍ଶନ । ମିଳିଲେ ସ୍ୱାମିଙ୍କ ଆଗେଣ ॥
ସ୍ୱାମିଙ୍କି କରି ଦଣ୍ଡବତ । ପୁଛିଲେ ଗନ୍ଧର ଚରିତ ॥
ସ୍ୱାମୀ ବୋଇଲେ ଗନ୍ଧ ନେଲି । ଜଗନ୍ନାଥ ଅଙ୍ଗେ ବୋଳିଲି ॥
ପ୍ରତ୍ୟକ୍ଷ ଦେଖ ଶ୍ରୀ ଅଙ୍ଗର । ସେ ଗନ୍ଧରାଜ ଜର ଜର ॥
ରାଜା ତ ଶୁଣିଥିଲେ ସତେ । ଗନ୍ଧରାଜ ଲେପିଲେ କାନ୍ଥେ ॥
ସବାରୁଙ୍କୁ ଆଜ୍ଞା ଦେଲେ । ଶ୍ରୀ ଅଙ୍ଗ ଦେଖନ୍ତି ବୋଇଲେ ॥
ସବାରୁଣ ଯାଇଁ ଦେଖନ୍ତି । ଶ୍ରୀ ଅଙ୍ଗେ ଗନ୍ଧ ଲାଗିଛନ୍ତି ॥
ଶ୍ରୀ ଅଙ୍ଗେ ଜର ଜର ହୋଇ । ଅର୍ଦ୍ଧକୋଶେ ବାସ କରଇ ॥
ଶ୍ରୀ ଅଙ୍ଗୁ ଗନ୍ଧ ପୋଛି ନେଲେ । ରାଜାଙ୍କ ହସ୍ତେ ନେଇ ଦେଲେ ॥
ଦେଖି ଆଶ୍ଚର୍ଯ୍ୟ ନୃପବର । ନମିଲା ସ୍ୱାମିଙ୍କ ପୟର ॥

ସାଧୁ ସେବକ ଯେତେଥିଲେ । ସାକ୍ଷାତ ସ୍ୱଥାଏ ବୋଇଲେ ॥
ସଭାହିଁ ହୋଇ ତତପର । ସେ ବଳେ ସ୍ୱାମୀଙ୍କ ପସ୍ତର ॥
ପୂର୍ବେ ଚୈତନ୍ୟ ଥିଲେ କହ । ଯନ୍ତ୍ର ମନ୍ତ୍ର ବୁଝିବା ପାଇଁ ॥
ଏ କଥା ମନରେ ରଖିଲ । ସେଦିନ୍ ନବ୍ବରକୁ ଗଲ ॥
ଜଗତେ କୀର୍ତ୍ତି ଖ୍ୟାତିକଲ । ନୀଳନବରେ ସନ୍ନ୍ୟାସଲ ॥
ଭଣଇ ବନ୍ଧୁ ଦିବାକର । ସେ ଗୁରୁପାଦେ ମୋର ଶିର ॥

ଇତି ଶ୍ରୀ ଜଗନ୍ନାଥାମୃତେ ଶ୍ରୀ ଅଚ୍ୟୁତ ଗୋସାଇଁ ଅନୁବର୍ଣ୍ଣଣେ
ନାମ ଏକାଦଶୋଽଧ୍ୟାୟଃ ।



# ଦ୍ୱାଦଶ ଅଧ୍ୟାୟ ।

ନମଇଁ ଶ୍ରୀଗୁରୁ ଚରଣ । ଜନ୍ମ ସାଗର ଯେ ହରଣ ॥
ପ୍ରତାପ ରୁଦ୍ର ନୃପବର । ପୂର୍ବକଥା ଚିନ୍ତ ମନର ॥
ଦିନେକ ଜଗ ମୋହନରେ । ଭେଟିଲ ସ୍ୱାମିଙ୍କ ସ୍ଥମୁରେ ॥
ପୁଛିଲ ଭକ୍ତି ଟି କେମନ୍ତ । କେବଣ ମତେ ଯୁକ୍ତି ଜାତ ॥
ଶ୍ରୀ ଜଗନ୍ନାଥ ଶ୍ରୀ ମୂର୍ତ୍ତିରେ । ମନ୍ତ୍ର ଭେଦାଇ କହ ମୋରେ ॥
ଶ୍ରୀ ରାଧା କୃଷ୍ଣ ଯୁଗ୍ମସ୍ୱର । ମୂର୍ତ୍ତିରେ କେଉଁଠାରେ ଠାବ ॥
ହେ ଗୁରୁ ଅଜ୍ଞାଦିଅ ମୋତେ । ଅଧମ ତରିବ ଯେମନ୍ତେ ॥
ଶ୍ରୀ ମନ୍ତ୍ରରାଜ କେଉଁ ଭାବେ । ବସିଛି ଜଗନ୍ନାଥ ଅଙ୍ଗେ ॥
ଏ କଥା ଭେଦାଇଣ ମୋତେ । କୃପା କରିବା ସ୍ନେହ ଚିତ୍ତେ ॥
ଏମନ୍ତେ ଶୁଣି ତା ବଚନ । ସ୍ୱାମୀ କହିଲେ ଏ ଅଜ୍ଞାମାନ ॥

ଶ୍ଳୋକଃ ।
ତସ୍ମିନ୍ ବୈ ଦ୍ୱିକୋଣସ୍ଥ ଶ୍ରୀ ରାଧାରମଣଂପଦା ।
ରାଧାକୃଷ୍ଣ ଜଗନ୍ନାଥ ମେତଦ୍ଭନ୍ତ୍ର ୭ ଯୁଗ୍ମକଂ ॥

ଆଦ୍ୟରେ ଦ୍ୱିକୋଣ କରିବ । ଷଟ୍‌କୋଣ ଦଳ ଧରିବ ॥
ତହିଁରୁ ଅଷ୍ଟଦଳ ହୋଇ । ଷୋଡ଼ଶ ଦଳପରେ ରହି ॥

ଦ୍ୱାବିଂଶ ଚତୁଃଷଷ୍ଟିଦଳ । ଶତଦଳ ସହସ୍ର ଦଳ ॥
ପୁରୁଷୋତ୍ତମରେ ବିହାର । ଏରୂପେ ପ୍ରଭୁ ଶ୍ରୀ ମୂର୍ତ୍ତିର ॥
ରାଧା କୃଷ୍ଣ ଏକତ୍ର ହୋଇ । ଜଗନ୍ନାଥ ମୂର୍ତ୍ତିରେ ରହି ॥
ପ୍ରଥମ ମଣ୍ଡଳସ୍ଥ ଯେହୁ । ତ୍ରିକୋଣ ବୋଲି ତାକୁ କହୁ ॥
ସିଂହାସନ ଷଟ୍‌କୋଣ ହୋଇ । ଷଟ୍‌ଚକ୍ର ଅଛି ତହିଁ ॥
ତାହା ବୋଲି ବେଦ ଅକ୍ଷର । ରାଧାକୃଷ୍ଣଙ୍କର ବିହାର ॥

ଶ୍ଳୋକଃ ।

ଇତ ଯୁଗାକ୍ଷରେ ଯୁଗ୍ମଂ ରାଧା କୃଷ୍ଣ ସ୍ୱରୂପିଣଂ ।
ବେଦାକ୍ଷଃ କୁରୁତେ ନିତ୍ୟଂ ନୀଳକନ୍ଦର ମନ୍ଦିରେ ॥

ଏ ଯୁଗ୍ମ ବେଦ ଏ ଅକ୍ଷର । ରାଧା କୃଷ୍ଣଙ୍କ ରୂପ ସାର ॥
ଆନନ୍ଦେ କରନ୍ତି ବିହାର । ନୀଳକନ୍ଦରେ ଦିବ୍ୟପୁର ॥
ବୃଷସ୍ଥ ଗୋପୀ ମନୋହାସ୍ତ । ଦେଶ୍ୱର ଉଦିତ ସାଗର ॥
ଶ୍ରୀରାଧା ବଲ୍ଲଭ ନାଗର । ମହା ଶୋଭା ଶ୍ୟାମ କିଶୋର ॥

ଶ୍ଳୋକଃ ।

ସିଂହାସନସ୍ୟ ଷଟ୍‌କୋଣଂ ସୁଭଦ୍ରା ହୃଦମଧ୍ୟଗଂ ।
ରାଧାକୃଷ୍ଣ ତତଃସ୍ୱାଦଂ ନୀଳକନ୍ଦର କୁଞ୍ଜକେ ॥

ସିଂହାସନ ଯେ ଷଟ୍‌କୋଣ । ସୁଭଦ୍ରାଙ୍କ ହୃଦ ମଧ୍ୟେଣ ॥
ନୀଳକନ୍ଦର କୁଞ୍ଜରେଣ । ତହିଁ ବିହରେ ରାଧାକୃଷ୍ଣ ॥
ପୁରୁଷୋତ୍ତମ କ୍ଷେତ୍ରବର । କୋଟିଏ ବ୍ରହ୍ମାଣ୍ଡ ଉପର ॥
ଯେ ସିଂହାସନସ୍ଥ ଅଟଇ । ଷଟ୍‌କୋଣ ବୋଲି ବେଦ କହ ॥
ସୁଭଦ୍ରାଦେବୀ ହୃଦ ମଧ୍ୟ । ରାଧାକୃଷ୍ଣ ତହିଁ ଅସ୍ୱାଦ ॥
ପର୍ବତ ଶିଖ ଯେଉଁ ସ୍ଥାନ । ତାହାକୁ ବୋଲି କୁଞ୍ଜବନ ॥
ନୀଳ ପର୍ବତ ଯେଣୁ ସ୍ଥାନ । ତେଣୁ ନିକୁଞ୍ଜ ତାର ନାମ ॥
ଅନ୍ୟ କ୍ଷେତ୍ରରେ ଭ୍ରମହୋଇ । ପୁରୁଷୋତ୍ତମକୁ ଆସଇ ॥
ବେଦ ମାନଙ୍କେ ତାହାର । ଦିଶି ଦ୍ୱୟଅନ୍ତ ଭକ୍ତି ସାର ॥

ଶେଷ ଦେବଙ୍କର ଭରଣ । ପଞ୍ଚକୋଟିଏ ଭରାଜେ ପୁଣ ॥
ଭୂଶକ୍ତି ସ୍ୱଶକ୍ତି ଏ ଦୁଇ । ଏଥିରୁ ଜାତ'ରଲ ଦେହ'ଇ ॥
ଭୂଶକ୍ତି ଶେଷଦେବ କାନ୍ଧ । ପଞ୍ଚକୋଟିଏ ଚରାଚର ବୋଝ ॥
ମତ୍ସ୍ୟବ୍ରହ୍ମ ପରଂବ୍ରହ୍ମରେ । ଅଛନ୍ତି ଶ୍ରୀ ନୀଳାଚଳରେ ॥
ମାୟା ବ୍ରହ୍ମ ଯେ ଶେଷଦେବ । ପରଂବ୍ରହ୍ମ ଯେ ଯୋଗୀ ସେବ ॥
ଶେଷଦେବଙ୍କ ନାଗନାଥ । ଯହିଁ ରଜସ୍ତେ ଜଗନ୍ନାଥ ॥
ସଚ୍ଚିଦାନନ୍ଦ ବ୍ରହ୍ମ ଯହିଁ । ଦାରୁ ସ୍ୱରୂପେ ଛନ୍ତି ବହି ॥
ଶ୍ରୀରାଧା କୃଷ୍ଣଙ୍କ ଦେହର । ତସଜ ଶ୍ରୀ ଦାରୁ ମୂର୍ତ୍ତିର ॥
ଜଗନ୍ନାଥ ବୋଇଲେ ଯେତେ । ଭକତି ହୁଅଇ ପ୍ରାପତେ ॥
ରାଧା କୃଷ୍ଣ ବୋଇଲେ ପ୍ରାଣୀ । ତେତିକ ଭକ୍ତି ପରମାଣି ॥
ରାଧା କୃଷ୍ଣ ଏକ ଶରୀର । ବିହାର ବଳ ମନ୍ତ୍ରକର ॥
ରାଧାଙ୍କ ଅଙ୍ଗ ତେଜବନ୍ତ । ଶ୍ରୀ ଜଗନ୍ନାଥେ ପରଂବ୍ରହ୍ମ ॥
ଚଉଦ ବ୍ରହ୍ମାଣ୍ଡର ସାର । ପୁରୁଷୋତ୍ତମ ନାମ ଯାର ॥
ଏତେ ବୈକୁଣ୍ଠ ପରେ ସାର । ପୁରୁଷୋତ୍ତମ ଧାମ ଯାର ॥
ଚଉଦ ବୈକୁଣ୍ଠରେ ଅଛି । ଚଉଦ ବସ୍ତୁ ବ୍ରହ୍ମରୂପୀ ॥
ସେ ବସ୍ତୁ ବ୍ରହ୍ମ ପ୍ରେମଚ୍ଛିତ । ପରମ ବ୍ରହ୍ମ ଜଗନ୍ନାଥ ॥
ଏଥିରେ ପ୍ରଧାନ ଅଟଇ । ପ୍ରେମ କୃପା ଯାହାକୁ କହ ॥
ମହାର୍ଣ୍ଣବରେ ଜଗନ୍ନାଥ । ଅସ୍ୱାଦ ରାଧାଙ୍କ ସଙ୍ଗତ ॥
ଏ ବାକ୍ୟ ଶୁଣି ନୃପବର । ପୁଚ୍ଛିଲେ ସ୍ୱାମିଙ୍କ ଛାମୁର ॥

ଶ୍ଲୋକଃ ।

ରାଧାକୃଷ୍ଣ ଯୁଗ୍ମାଙ୍ଗସ୍ଥ ଦ୍ରବତ୍ୱ୍ୟା ପୁରୁଷଂ ଯୁଂଗ୍ମ ।
ତନ୍ମର୍ମମିଳଥା ସ୍ୱାଦଂ ଅଶ୍ରୁପ୍ୟ ମଡବାସ୍ଥିତଂ ॥

ରାଧା କୃଷ୍ଣ ଯୁଗ୍ମ ଅଙ୍ଗରେ । ଅଛନ୍ତି ଏକତ୍ର ହୁଦରେ ॥
ଏ ମର୍ମ କଥାର ଅସ୍ୱାଦ । ଅଶ୍ରୁପ୍ୟ କହ ଦେଇ ବୋଧ ॥
ସେହ ସଂଶୟ ଉପୁଜର । ତୁମ୍ଭେ ଯେ ଅଧମ ଉଦ୍ଧାର ॥

ସ୍ୱାମୀ କହନ୍ତି ଏ ଭୁବେଣ । ଶୁଣ ହେ ଯୁଗାଙ୍କ ଲକ୍ଷଣ ॥
ଏ ଭାବ ଭଜ ଲୁବ୍ଧଯାଇ । କୃଷ୍ଣଙ୍କ ବର୍ଣ୍ଣ ସେ କହଇ ॥
ସର୍ବ ଅଙ୍ଗରେ ବ୍ୟକ୍ତି ପାଇ । ଯୁଗାଙ୍କ ଭାବ ସେ ଜାଣଇ ॥
ନୀଳାଚଳରେ ପରଂବ୍ରହ୍ମ । ରାଧାଙ୍କ ସଙ୍ଗେ ହୋଇ କୃଷ୍ଣ ॥
କୋଟିଏ କଳ୍ପ ହେବେ ଯାଇ । ଏ ଲୀଳା କେବେ ନ ଛାଡ଼ଇ ॥

ଶ୍ଲୋକଃ ।

ସିଂହାସନ ଯୋଗମାୟା ପରଂବ୍ରହ୍ମାପି ସର୍ବଦା ।
ନରହରୀରେ ଯଥା ଭେଦଃ ତଥା ଶ୍ରୀକୃଷ୍ଣ ରାଧିକା ॥

ଯୋଗମାୟା ସିଂହାସନରେ । ପରମବ୍ରହ୍ମ ଶୋଭିକରେ ॥
କ୍ଷୀରେ ମିଶଇ ଯେସନେ ନୀର । ରାଧା କୃଷ୍ଣ ଏକ ଶରୀର ॥
ସେ ଯୋଗମାୟା ବଳଦେବ । ସିଂହାସନ ସ୍ୱରୂପେ ଭାବ ॥
ପ୍ରତ୍ୟେଙ୍ଗ ବଳଦେବ ହୋଇ । ପୂଜା ଲଭନ୍ତି ପାଶେ ରହି ॥
ପୃଥ୍ୱୀରେ ଯେତେ ଅବତାର । ବଳଦେବ ଅଙ୍ଗୁ ବାହାର ॥
ଯେତେ ସମୁଦ୍ର ଯେତେ ମସ୍ତ । ଶେଷ ଅଙ୍ଗରୁ ଜାତ ହୋଇ ॥
ସଂଖ୍ୟା ଜନମ କୋଟି କୋଟି । ଯଥା ନଖ ବେଣୁରୁ ହୋନ୍ତି ॥
କୋଟି ବ୍ରହ୍ମାଣ୍ଡ କୋଟି ପୁର । କୋଟିଏ କୃଷ୍ଣ ଅବତାର ॥
କୋଟିରାଧିକା ବୃନ୍ଦାବନର । କୋଟିଏ ଲକ୍ଷ୍ମୀ ଏ ସଙ୍ଗରେ ॥
ଏହି ଜଗନ୍ନାଥୁଁ ଜନ୍ମନ୍ତି । କାଳେ ଏହି ଅଙ୍ଗେ ମିଶନ୍ତି ॥
ଏ ଜଗନ୍ନାଥ ମୂର୍ତ୍ତି ସାର । ଅଟଇ ଅଣଅବତାର ॥
ଏ ଅବତାରେ ଯେଣି ହୋନ୍ତି । ଏଥିରୁ ଅବତାର ହୋଇ ॥
ସେ ଦେହ ଅଙ୍ଗ ନ ଦିଶଇ । ଚିହ୍ନି ଜାଣିଲେ ଦୃଶ୍ୟ ହୋଇ ॥
ପ୍ରେମ ସାଧୁକୃପା ଯାହାରେ । ସେ କହି ପାରନ୍ତି ଗୋଚରେ ॥
ଯେ ରାଧା ସେ କୃଷ୍ଣ ଅଟନ୍ତି । କୃଷ୍ଣ ରାଧା ଭାବେ ଅଛନ୍ତି ॥
ସ୍ୱରୂପରେ ଅଭେଦ ମୂରତି । ପ୍ରେମୀ ଭକତେ ଯା ଜାଣନ୍ତି ॥
ନାଟଭବନରେ ରାଧା କୃଷ୍ଣ । କୀର୍ତ୍ତନ୍ତି ମନେ ହୋଇ ତୁଷ୍ଟ ॥

ସମସ୍ତପରେ ଦେବ ଏହ । ଏ ଭାବ ହେମାଙ୍ଗୀ ଜାଣଇ ॥
ଯେ ମାଳାରଳ ନାମ ବନ୍ଧ । ରାଧାସଙ୍ଗଳୀ ସେ ଅଟଇ ॥
ଏ ରଙ୍ଗ ଭୂମିର ମଧ୍ୟରେ । ଶ୍ରୀ ଶେଷଦେବଙ୍କ ଶିରରେ ॥
ଅଷ୍ଟଦଳ ପଦ୍ମକେଶରେ । ଚିନ୍ତାମଣି ପୀଠ ଉପରେ ॥
ଅପୂର୍ବ ନୀଳ ଟଳ ଟହାର । ଅଗମ୍ୟ ଅପ୍ରେମ ଜନର ॥
ଏରୂପେ ବସେ ଛନ୍ଦ୍ର ମାତ । ଦେଖନ୍ତି ଭବେ ବେଦ ଛନ୍ଦ୍ର ॥
ଏରୂପେ ଶୋଭା ପାଦ ଦୁଇ । ଭକତ ପ୍ରାପ୍ତେ ଘଟେ ଯାଇ ॥
ସିଂହାସନ ପାଖେ ସୁନ୍ଦର । ରତ୍ନ ରଙ୍ଗଶାଳା ସାର ॥
ରତ୍ନ ମଣିରେ ଶୋଭିତ । ଅଷ୍ଟସଖୀ ସନ୍ଧିରେ ସ୍ଥିତ ॥
ପଶ୍ଚିମେ ଅଛନ୍ତି ଲଳିତା । ବାୟବ୍ୟେ କମଳା ଯେ ସ୍ଥିତା ॥
ଉତ୍ତର ଦ୍ୱାରରେ ଶ୍ୟାମଳା । ଐଶାନ୍ୟେ ହରିପ୍ରିୟା ସ୍ଥିତ ॥
ପୂର୍ବେ ବିଶାଖା ଅଗ୍ନି ଶଙ୍ଖା । ଯାମ୍ୟେ ପଦ୍ମା ନୈର୍ଋତେ ଭଦ୍ରା ॥
ଏମାନେ ଅଷ୍ଟଦଳ ମଧ୍ୟେ । ସେବା କରୁଛନ୍ତି ଆନନ୍ଦେ ॥

ଶ୍ଳୋକଃ ।

ତଦନ୍ତେ ଚତୁର୍ଦ୍ୱାରଂ ଚତୁର୍ବେଦାଃ ସ୍ଥିତାଃ ସଦା ।
ପିବନ୍ତି ମଧୁରଂ ପ୍ରେମଂ ରସସ୍ୱାଦ ଲମ୍ପଟାଃ ॥

ଏମନ୍ତେ ଚାରିଦ୍ୱାରେ ସେହି । ଚାରିବେଦ ଅଛନ୍ତି ରହି ॥
ପିବନ୍ତି ସେ ମଧୁର ପ୍ରେମ । ରସ ଅଳସ ଆସ୍ୱାଦନ ॥

ଶ୍ଳୋକଃ ।

ପୂର୍ବେହିଂ ସାମବେଦସ୍ତୁ ଋଗ୍‌ବେଦଦକ୍ଷିଣେ ତଥା ।
ଅଥର୍ବଃ ପଶ୍ଚିମେ ଭାଗେ ଯଜୁର୍ବେଦସ୍ତୁ ଉତ୍ତରେ ॥

ପୂର୍ବ ଦ୍ୱାରରେ ସାମବେଦ । ଦ୍ୱାର ଅବେଧ ପ୍ରେମେ ବୋଧ ॥
ଦକ୍ଷିଣେ ଋକ୍‌ବେଦ ରହୁ । ପଶ୍ଚିମେ ଅଥର୍ବ ଅଛଇ ॥
ଉତ୍ତରେ ଅଛି ଯଜୁର୍ବେଦ । ଦ୍ୱାର ଅବୋଧ ମହାବୋଧ ॥
ବ୍ରହ୍ମା ଗାୟତ୍ରୀ ବେଦମାତ । ଯହିଁ ଦ୍ୱାରଙ୍କ ରୂପେ ସ୍ଥିତ ॥

ଅନେକ ଦୂରର ଅନ୍ତରେ । ବ୍ରହ୍ମା ଇନ୍ଦ୍ର ଦେବ ସର୍ଗରେ ॥
ଏ ଭାବେ ଲେଖନ ଜାଣନ୍ତି । ଅନେକ ମନେ ବିଚାରନ୍ତି ॥

ଶ୍ଳୋକଃ ।

ଅଲକ୍ଷିତମନ୍ତର୍ଗୋଚ୍ୟ ମାୟାମପି ଦୁର୍ଗମଂ ।
ଶ୍ରୀମଦବୃନ୍ଦାବନଂ ନିତ୍ୟଂ ନୀଳକନ୍ଦରମଧ୍ୟଭୂଃ ॥

ଲକ୍ଷଦେବାଙ୍କୁ ଲକ୍ଷ ନାହିଁ । ବଚନେ କେ ପାରିବ କହି ॥
ଅଟଇ ଅଗାଧ ଗମ୍ଭୀର । ଅବୋଧ ଜନେ ଅତିଦୂର ॥
ଶ୍ରୀ ବୃନ୍ଦାବନ ନିତ୍ୟସ୍ଥଳ । ନୀଳକନ୍ଦରେ ସର୍ବେ ମେଳ ॥
ଶ୍ରୀ ମୂର୍ତ୍ତି ମଧ୍ୟେ ଭେଦ ଏହି । ପଞ୍ଚାଙ୍ଗ ଦେଖ ମନଦେଇ ॥
ଯେତେକ ଧବଳ ଚନ୍ଦ୍ରାବର୍ଣ୍ଣ । ପ୍ରେମରୂପ ବୋଲି ତା ଜାଣ ॥
ଯେତେ ଶ୍ୟାମଳ ବର୍ଣ୍ଣ ହୋଇ । କୃଷ୍ଣ ସ୍ୱରୂପ ଜାଣ ସେହି ॥
ଯେତେ ଧବଳ ବଳଦେବ । ଏରୂପେ ଦେଖ ପ୍ରେମଭାବ ॥
ଯେତେ ଗଉର ବର୍ଣ୍ଣ ହୋଇ । ଶ୍ରୀ ରାଧାଙ୍କ ଶ୍ରୀଅଙ୍ଗ ସେହି ॥
ଯେତେ ଧବଳ ରଙ୍ଗବର୍ଣ୍ଣ । ସୁଭଦ୍ରା ବୋଲି ତାହା ଜାଣ ॥
ଏରୂପେ ପଞ୍ଚାଙ୍ଗ ଭାବରେ । ଦେଖ ଜଗନ୍ନାଥ ଅଙ୍ଗରେ ॥
ଅଧର ଚକ୍ଷୁ ଏ ତିନିକ । ଏତିନି ଅତ୍ୟନ୍ତ ଗୁପତ ॥
ପ୍ରେମଭକ୍ତିରେ ଯା'ର ଭାବ । ଯେ ଭକ୍ତ କରେ ଏହା ଠାବ ॥
ଏକାନ୍ତ ଭାବେ କୃଷ୍ଣ ରାଧା । ପିବନ୍ତି ମୁଖେ ମୁଖେ ସୁଧା ॥
ଏକଅଙ୍ଗ କୃଷ୍ଣ ରାଧାରେ । ଭେଦ ନୁହନ୍ତି ବୃନ୍ଦାବନରେ ॥
ସୁବର୍ଣ୍ଣ ଚମ୍ପାପ୍ରାୟେ ଗୋର । ରାଧାଙ୍କ ଅଙ୍ଗ ଉଜ୍ଜଳ ॥
ମହାଶ୍ୟାମ ଅତି କୋମଳ । ଶ୍ରୀକୃଷ୍ଣ ଶ୍ରୀଅଙ୍ଗମଞ୍ଜୁଳ ॥
ଯୁଗଳ ପ୍ରେମଅଙ୍ଗ ବହି । ପ୍ରକୃତି ପୁରୁଷ ଏ ଦୁଇ ॥
ଭକ୍ତାନନ୍ଦୀ ବ୍ରହ୍ମାନନ୍ଦରେ । ଅଭେଦ୍ୟ ଅଛନ୍ତି ମନ୍ଦିରେ ॥
ମର୍ଯ୍ୟାଦା ଯେତେକ ଅବତାର । ବସ୍ତ୍ର ଚଢ଼ାଇଲେ ଏ ସଂସାର ॥
ଶେଷଦେବଙ୍କ ଅଙ୍ଗୁ ଜାତ । କୋଟି କୋଟି ବସ୍ତ୍ର ଜଗତ ॥

ଚତୁର୍ଦ୍ଦଶ ବ୍ରହ୍ମାଣ୍ଡ ଏହି । ଶେଷଦେବ ପାଦୁଁ ଜନ୍ମଇ ॥
ଯେମନ୍ତେ ଏକଦୀପ ଥାଇ । ଲକ୍ଷେ ଦୀପ ତହୁଁ ଲାଗଇ ॥
ସେ ଦୀପ ଥାଇ ସେହିମତେ । ଲାଗିଲା ଦୀପଟି ପ୍ରତାପେ ॥
ଏହି ଜଗନ୍ନାଥ ମୂରତି । କୋଟି ଅବତାର ହୁଅନ୍ତି ॥
କୋଟି ବ୍ରହ୍ମାଣ୍ଡ କୋଟି ପୁରି । ଏଥିରୁ କୋଟି ଅବତାର ॥
ଏ ଏହିରୂପେ ଲୀଳାଗତ । ସେରୂପ ମହତ୍ତ୍ୱେ ଜପନ୍ତି ॥
ଦୀପରୁ ଦୀପ୍ତ ଯେମନ୍ତ । ଲାଗିଣ ହୋଏ ତେଜୋବନ୍ତ ॥
ଏହି ମୂର୍ତ୍ତିରୁ ଜାତହୋଇ । ତେଜ କାନ୍ତି କରନ୍ତି ମହୀ ॥
ଯେମନ୍ତ ରାଜାଗୃହେ ଥାଇ । ସେନାପତିଙ୍କି ପଠିଅଇ ॥
ସେ ସେନା କରଇ ସମର । ନାମ ବଢାଇ ସେନାର ॥
ମଥୁରା ଗୋପ ବୃନ୍ଦାବନ । ଏ ଅଡ ଯେତେ ଲୀଳାସ୍ଥାନ ॥
ଅଯୋଧ୍ୟା ଦ୍ୱାରକା ଯେ କାଶୀ । ବୈକୁଣ୍ଠ ଅଡ କ୍ଷେତ୍ର ମିଶି ॥
ନିତ୍ୟସ୍ଥଳର ବାସ ସେହି । ଉବନ୍ତି ଲୀନ ହେବା ପାଇଁ ॥
ଶ୍ରୀ ପୁରୁଷୋତ୍ତମ ସମାନ । ନାହିଁ ଅନ୍ୟ କ୍ଷେତ୍ର ଉପାମ ॥

ଶ୍ଳୋକଃ ।

ଉତ୍ପତ୍ତି ପ୍ରଳୟୋଽଦ୍ୟାତ ବିଷ୍ଣାମସ୍ଥଳ ମାତ୍ରକଂ ।
କୋଟ୍ୟବତାରକଂ ତେଷାଂ ଯଥା ଦୃଶ୍ୟନ୍ତେ ବୈଶବଃ ॥

ଯହିଁରୁ ଯେ ଉତ୍ପତ୍ତି ହୋଇ । କାଳେ ସେହି ଦେହେଁ ମିଶଇ ॥
ଯେମନ୍ତେ ସମୁଦ୍ରର ଜଳ । ମେଘେ ବର୍ଷନ୍ତି ଗନ୍ଧଳ ॥
ନଦୀମାନେ ଦୀର୍ଘ ବଢ଼ନ୍ତି । ଖଣ୍ଡି ଅଖଣ୍ଡି କର ଯାନ୍ତି ॥
ପୁଣି ସମୁଦ୍ରେ ହୋନ୍ତି ମେଳ । ତେମନ୍ତ ହୋଇ ଏ ଘନ୍ଦଳ ॥
ଯେତେ ମହାଟିର ସାଗର । ଯେତେକ କ୍ଷେତ୍ର ଦିବ୍ୟପୁର ॥
ଯେତେ ତଳ ବିଶ୍ୱସଂସାର । ଯେତେକ ବିଷ୍ଣୁ ଅବତାର ॥
ଏହି କ୍ଷେତ୍ରରୁ ଜାତ ହୋନ୍ତି । କାଳେ ଏହି କ୍ଷେତ୍ରେ ମିଶନ୍ତି ॥
ଅଉ ଯେତେକ ଦେବେ ଛନ୍ତି । ସେ ତପସ୍ୟା କରୁଅଛନ୍ତି ॥

ପୁରୁଷୋତ୍ତମ କ୍ଷେତ୍ରେ ଯାଇଁ । ରେଣୁ ପ୍ରମାଣେ ଥିବୁ ବହି ॥
ବୈକୁଣ୍ଠଠାରୁ ଶ୍ରେଷ୍ଠ ଏହି । ପ୍ରଳୟ କାଳେ ନାଶ ନୋହି ॥
ସମସ୍ତ ଅଟଇ ଅନିତ୍ୟ । ପୁରୁଷୋତ୍ତମ ଅଟେ ନିତ୍ୟ ॥
ଦ୍ୱାଦଶ ସ୍କନ୍ଧର ବଚନ । ମାର୍କଣ୍ଡ କଲେ ଦରଶନ ॥
ସମସ୍ତ ପ୍ରଳୟ ହୋଇଲା । ଏ ସ୍ଥାନ ମାତ୍ର ଏକା ଥିଲା ॥
ବେଦ ପୁରାଣେ ଛନ୍ତି କହି । ଏ ସ୍ଥାନ ପ୍ରଳୟ ନୁହଇ ॥
ମନ୍ତ୍ରରେ ଏହି ମୂର୍ତ୍ତି ସ୍ଥିତ । ଯନ୍ତ୍ରରେ ଏହି ସ୍ଥାନ ସ୍ଥିତ ॥
ତନ୍ତ୍ରରେ ବୁଝ ଏହୁ ପୁର । ନାମ ପ୍ରେମ ଏହି ମୂର୍ତ୍ତିର ॥
ଅଶେଷ କ୍ଷେତ୍ରଙ୍କ ମଧ୍ୟରେ । କୃଷ୍ଣ ହୁଅନ୍ତି ଅବତାରେ ॥
ଥୋକାଏ ଦନ ଲୀଳା କରି । ତହିଁରେ ଯଶକୁ ବିସ୍ତାରି ॥
ସେ ସୁଖ ସରିଲ୍ଲ ଅନ୍ତରେ । ପୁଣି ଅସନ୍ତି ଏହି ପୁରେ ॥
ଯେମନ୍ତେ ମୋହନ ମନ୍ତ୍ରର । ବଶ କରଇ ସର୍ବ ନର ॥
ତେମନ୍ତେ ଏ କ୍ଷେତ୍ର ମୋହନ । କରନ୍ତି ରାଧାକୃଷ୍ଣ ମନ ॥
ଶ୍ରୀ ଜଗନ୍ନାଥ ଯେ ଶ୍ରୀମୁଖ । ମହାନନ୍ଦରେ ସେ ନିର୍ମିତ ॥
ପ୍ରେମାନନ୍ଦ ତନୁକୁ ଧରି । ରସ ସାଧନା ପ୍ରେମପୁରୀ ॥
ମହାନନ୍ଦ ଯେ ଜଗନ୍ନାଥ । ରସାନନ୍ଦୀ ରାଧିକା ସ୍ୱେତ ॥
ଏମନ୍ତ ଶୁଣି ନୃପବର । ପୁଛିଲ୍ଲ ସ୍ୱାମିଙ୍କ ଅଗର ॥
ଶ୍ରୀ ଜଗନ୍ନାଥ ଶ୍ରୀ ମୂର୍ତ୍ତିରେ । ରାଧାକୃଷ୍ଣ ଛନ୍ତି ତହିଁରେ ॥
ସଂଶୟ ଛେଦ କୃପାକର । ପ୍ରଗଟ ଯେଣୁ ହେବ ମୋହର ॥
ଶୁଣି କହନ୍ତି ଗୁରୁଦେବ । ଶୁଣ ନୃପତି ଅସାଇବ ॥

ଶ୍ଳୋକଃ ।

ଶ୍ରୀକୃଷ୍ଣଃ ପଶ୍ଚିମ ମୁଖଶ୍ଚ ରାଧାମୁଖଶ୍ଚ ପୂର୍ବକେ ।
ପରସ୍ପରଂ କୃଷ୍ଣରାଧା ବିଳାସ ନୀଳକନ୍ଦରେ ॥

ଶ୍ରୀକୃଷ୍ଣ ମୁଖ ପଶ୍ଚିମକୁ । ଶ୍ରୀରାଧାଙ୍କ ମୁଖ ପୂର୍ବକୁ ॥
ଏରୂପେ ଅତି କୃଷ୍ଣ ହୋଇ । ନୀଳକନ୍ଦରେ ଛନ୍ତି ରହି ॥

ଅତଲ୍ୟବର୍ଣ୍ୟ ଜ୍ୱରେଣ । କୃଷ୍ଣ ବଶ ହୋଇଲେ ପୁଣ ॥
ବଇଠି ପାଦ୍ମେ ଯେ ବଶଇ । ଶ୍ରୀକୃଷ୍ଣ ବେଢ ପାଦ ସେହ୍ନ ॥
ଯହିଁରେ ଝଙ୍କତଣ ଶୋହ୍ନ । ଶ୍ରୀରାଧାଙ୍କର ପାଦ ସେହ୍ନ ॥
ନନ୍ଦିତ ହୃଦମ୍ବୁ ବନ୍ଧନେ । ଅଛନ୍ତି ନଟବର ମନେ ॥
ସ୍ୱଭ୍ୱେ ବେଢ ଅଲଙ୍ଗନ । ଅଛନ୍ତି ଉଦବଢ଼ ବନ୍ଧନ ॥
ପ୍ରେମରେ ହୋଇ ଜରଜର । ନ ଜାଣନ୍ତି ଅପଣା ପର ॥

ଶ୍ଳୋକଃ ।

ସ୍ୱଧା ହିନ୍ଦୁର ବନ୍ଧୁଭ୍ୟାଂ ଶ୍ୱେତ ଶତା ପ୍ରକାଶକଂ ।
ଶ୍ରୀକୃଷ୍ଣ କରଯୁଗ୍ମଂ ଚ ଅଲଙ୍ଗନ ସ୍ଥିତ ପ୍ରଭୁଃ ॥

ବନ୍ଧୁ ଭାବରେ ବେଢଜନ । ପ୍ରେମ ଭାବରେ ସୁଖମାନ ॥
ରାଧାଙ୍କ ଭାବେ ବଶ ହୋଇ । ବନ୍ଧିଲେ ଛନ୍ଦି କୃଷ୍ଣ ରହି ॥
ଏହାଙ୍କ ତେଜୁଁ ବସ୍ତୁ ଜାତ । ସେ ଏଥେ କରେ ଗତାଗତ ॥
ରାଧାକୃଷ୍ଣଙ୍କ ମୁଖ ଦୁଇ । ପ୍ରେମଭାବରେ ନ ବଶଇ ॥
ପୂର୍ବ ପଶ୍ଚିମ ଦୁଇ ସ୍ଥାନ । ଅଛଇ ଦୁହିଙ୍କ ବଦନ ॥
ଜଗନ୍ନାଥ ମୂର୍ତ୍ତି ଭିତର । ରହିକେ ଜାଣନ୍ତୁ ଏ ସାର ॥
କୋଟି କୋଟି ଯୁଗଅନ୍ତର । ଏ ଲୀଳା କେବେ ନୋହେ ଦୂର ॥
କୌଣସିମତେ ଭଗ୍ନ ନୋହି । ଶୁଣ ସଜ୍ଜନ ମନ ଦେଇ ॥
ଅନେକ ଜନ୍ମେ ଭକ୍ତି ସାଧି । ଯେ ହୋଇଥାଇଛି ସୁବୁଦ୍ଧି ॥
ସେ ଭକ୍ତି ବଳେ ଏବେ ଅସି । ଜଗନ୍ନାଥ ଶରଣ ପଶି ॥
ମନ୍ତ୍ରଜପରେ ଉପାସନା । ଖଣ୍ଡଇ ପାପ ଦୁର୍ବାସନା ॥
ଭକ୍ତମଣ୍ଡଳ ସେ ଲଭଇ । ଲଳିତା ସଙ୍ଗେ ରହିବଇ ॥
ଏମନ୍ତ ଶୁଣି ନୃପବର । ନମିଲା ସ୍ୱାମିଙ୍କ ପଦ୍ମର ॥
ବହୁତ ପ୍ରୁତମାନ ଭଲ । ଉଦ୍ଧାର ହୋଇଲ ବୋଇଲ ॥
କହିଲ ଭକ୍ତି କରୁଣ । ମୋତେ ଦେହେଁ ପ୍ରେମେ କଲ ପୂର୍ଣ୍ଣ ॥
ପାଖେ ଯେ ସାଧୁମାନେ ଥିଲେ । ଶୁଣିଣ ଅଶ୍ଚର୍ଯ୍ୟ ମଣିଲେ ॥

କହ ବସ୍ତୁତ ସ୍ତୁତିମାନ । ନବରତ୍ନ ଘଲେ ସ୍ୱଜନ ॥
ସମସ୍ତେ ପ୍ରେମେ ଶାନ୍ତ ହେଲେ । କେ ମାନ୍ୟ ଅଲଙ୍ଘନ କଲେ ॥
ହେଣୁ ଅଦ୍ୱୈତ ବୋଲାଇ । ଅତି ବଡ଼ ଚରିତ କହି ॥
ଶ୍ରୀ ଅଦ୍ୱୈତଙ୍କ ଚରଣ । ହେତ୍ର ଦବାକର ଶରଣ ॥

ଇତି ଶ୍ରୀ ଜଗନ୍ନାଥାମୃତେ ଶ୍ରୀ ଅଦ୍ୱୈତ ଜଗନ୍ନାଥ ଦାସ
ଗୋସାଇଁ ଅନୁକର୍ମଣି ନାମ ଦ୍ୱାଦଶୋଽଧ୍ୟାୟଃ ।



## ତ୍ରୟୋଦଶ ଅଧ୍ୟାୟ ।

ସ୍ୱଜନେ ଶୁଣ ଦେଇମନ । ଶ୍ରୀ ମନ୍ତ୍ରସାରର ପ୍ରଚ୍ଛିନ୍ନ ॥
ଶ୍ରୀ ଅଦ୍ୱୈତ ଗୋସାଇଁର । କୀର୍ତ୍ତି ବଢ଼ିଗଲା ସଂସାର ॥
ସର୍ବେ ଜାଣିଲେ ତାଙ୍କ କଥା । ପ୍ରେମଭକ୍ତିରେ ସାମରଥା ॥
ପ୍ରଭୁଚୈତନ୍ୟ ଆଜ୍ଞା କଲେ । ସଚା ଅଦ୍ୱୈତ ବୋଇଲେ ॥
ଶ୍ରୀ ଅଦ୍ୱୈତ ବୋଲି ବାଣୀ । ସତ୍ୟେ ସମସ୍ତ ମୁଖେ ଶୁଣି ॥
କୀର୍ତ୍ତି ବଢ଼ିଲା ଦେଶାନ୍ତର । ଶିତପକ୍ଷେ ଶଶିଚନ୍ଦ୍ରର ॥
ଶୁଣି ମହନ୍ତ ଜନମାନେ । ମିଳିଲେ ସ୍ୱାମି ସନ୍ନ୍ୟାସେ ॥
ବହୁନ୍ତମାନ ପଚାରନ୍ତ । ପ୍ରବୋଧ ହୋଇ ସୁଖପାନ୍ତି ॥
କର୍ମରୁ ବ୍ରହ୍ମ ପରଯନ୍ତେ । ଯେ ଯାହା ପଚାରନ୍ତି ତତେ ॥
ହାସ୍ୟଠାବରେ ବ୍ରହ୍ମଜ୍ଞାନ । ପ୍ରବୋଧ ହୋନ୍ତି ସାଧୁଜନ ॥
ଏହାକେ କ୍ଷେତ୍ରଧାମେ ଅସି । ବ୍ରହ୍ମାନନ୍ଦ ନାମେ ସନ୍ନ୍ୟାସୀ ॥
ବିଜୋଷ ଛତାଧର ଶିରେ । ଛଡେପାଟେକ ସଙ୍ଗତରେ ॥
ପଢ଼ୁଛନ୍ତି ବେଦ ବେଦାନ୍ତ । ସମସ୍ତେ ଶାସ୍ତ୍ରରେ ପଣ୍ଡିତ ॥
ଦଣ୍ଡରେ ବାନାଏ ବାନ୍ଧଣ । ବେଦ ଅର୍ଥରେ ବଢ଼ଟାଣ ॥
ବଟତଳେ ଆସି ବସିଲେ । ପଣ୍ଡିତ ଅଣ ଆଜ୍ଞା କଲେ ॥
ବ୍ରହ୍ମ କହିଲେ ଇଛାମୋର । ନୋହିଲେ ଯିବ ଦେଶାନ୍ତର ॥
ନୋହିଲେ ଚଉକୋଣ କର । ଛତାଏ ଦଅ ଦଣ୍ଡଦାସ ॥

ଏ ବାକ୍ୟ ଶୁଣି ବିଦ୍ୟାବାନ । ତବେ ଗଇଲେ ସନ୍ନିଧାନ ॥
ଏରୂପେ ସମ୍ପ୍ରଦାନ ଗଲା । ସନ୍ନ୍ୟାସିଙ୍କ ଭୂଷା ନୋହିଲା ॥
ପଣ୍ଡିତେ ବୋଇତ ଲଦିଲେ । ରାଜା ମନରେ ଦୁଃଖ କଲେ ॥
ସ୍ୱାମି ଶୁଣିଣ ଏ ବଚନ । ମିଳି ସନ୍ନ୍ୟାସି ସନ୍ନିଧାନ ॥
ସନ୍ନ୍ୟାସୀ ପୁଚ୍ଛିଲେ ଉତ୍ତର । ବ୍ରହ୍ମ ହୋଏ କେତେପ୍ରକାର ॥
ଶୁଣିଣ ସନ୍ନ୍ୟାସୀ ବଚନ । ସ୍ୱାମୀ କହନ୍ତି ବ୍ରହ୍ମଜ୍ଞାନ ॥
ପ୍ରଥମେ ଏକ ବ୍ରହ୍ମ ଅଛି । ତହିଁ ଯୋଗମାୟା ମିଶିଛି ॥
ସେ ବ୍ରହ୍ମ ରୂପ ରେଖ ନାହିଁ । ବେଦ ତାହାକୁ ନ ଜାଣଇ ॥
ବ୍ରହ୍ମା ମହେଶ ଭେଦନାହିଁ । ଅଗମ୍ୟ ଅଗୋଚର ସେହି ॥
ଯେ ଯେ ସମସ୍ତ ଦେଖୁଅଛ । ତାହାର ଭିତରେ ପୂରିଛି ॥
ଏ ବେଦ ସ୍ମୃତିର ବଚନ । ବେଦେ କହନ୍ତି ବ୍ରହ୍ମଜ୍ଞାନ ॥
ନୟନେ ଦେଖିନାହିଁ କେହି । ମନ କଳିବାରେ ସେ ନାହିଁ ॥
କହିବାରେ ନୁହଇ ଅନ୍ତ । ତାହାର ମହିମା ଅନନ୍ତ ॥
ଅଗମ୍ୟ ଅଗୋଚର ସେହି । କେବଳ ବିଶ୍ୱାସରେ ପାଇ ॥
ଶୂନ୍ୟ ପରାୟେ ରୂପ ତାର । ଏଣୁ ଶୂନ୍ୟକୁ ଦୃଷ୍ଟି କର ॥
କଉ କସ୍ୱଏ ସଙ୍ଗ ସେହି । ତାକୁ ଦେଖନ୍ତା ନାହିଁ କେହି ॥
କୋଟି ବ୍ରହ୍ମାଣ୍ଡ କ୍ଷଣମାତେ । ଜାତକର ନାଶେ ଭୁରତେ ॥
ବ୍ରହ୍ମଅଣ୍ଡ ବାହାରେ ସେହି । ଅଣ୍ଡଜାବେ ଦେଖିବ କାହିଁ ॥
ଚକ୍ଷୁ ନ ପାଇ ଏହି କର୍ମ । କେହି ବୋଲନ୍ତି ଅହଂବ୍ରହ୍ମ ॥
କେ ବୋଲେ ଧନ୍ୟ ବ୍ରହ୍ମହୋଇ । ଓଁକାର ବ୍ରହ୍ମ କେ କହଇ ॥
ଶବଦବ୍ରହ୍ମ କେ କହନ୍ତି । ଗୁରୁ ପଞ୍ଚ ବ୍ରହ୍ମ ବୋଲନ୍ତି ॥
ଦାରୁ ବ୍ରହ୍ମ ଶ୍ରୀଜଗନ୍ନାଥ । ନାମବ୍ରହ୍ମ ଅଟେ ଜଗତ ॥
ବ୍ରହ୍ମ ଭୁବନେ ସେ କଠୋର । ନାମ ଅଟଇ ତରେ ସଂସାର ॥
ତୁମ୍ଭେ ନାମକୁ ଅଟଶଙ୍କର । ଭକ୍ତି ନାବେ ସଂସାରୁ ତର ॥
ଶୁଣି ସନ୍ନ୍ୟାସୀ ବେଗେ ଉଠି । ଛତାକୁ ପକାଇଲେ ପିଠି ॥

ଦ୍ରବ୍ୟପତନ ଯେଣ କରେ । ବାନ୍ଧିଲେ ସ୍ୱାମିଙ୍କ ଶିରରେ ॥
ରୁ ଅଛିବନ୍ଧୁ ଜଗନ୍ନାଥ । ଦାୟଯୋଗ୍ୟ ବନ୍ଧୁ ପଣ୍ଡିତ ॥
ସୁହ୍ମଣ ସଙ୍ଗାର ବଦନ । ବୋଇଲେ ସଙ୍ଗା ଭୃତ୍ୟ ଧନ୍ୟ ॥
ସମ୍ଭାଳନ୍ତୁ ଦ୍ରବ୍ୟ ବୈଷ୍ଣବ । ପଣ୍ଡିତ ପଡଣ ଜ୍ଞାନି ଜ୍ଞବ ॥
ଭିକ୍ଷାକର ମାସେ ରହିଲେ । ସନ୍ତୋଷେ ଜଗନ୍ନାଥ ଗଲେ ॥
ଲୋକେ ଶୁଣି ହରଷ ହେଲେ । ଉପଦେଷ୍ଟା ହେବୁ ବୋଇଲେ ॥
ଅଦ୍ୟେ ଉଦ୍ଧବ ଦାସେ ଗଲେ । ଉପଦେଶ ମନ୍ତ୍ର ବୋଇଲେ ॥
ନିତ୍ୟ ଲଳିତା ସଖୀ ସେହି । ମର୍ତ୍ତ୍ୟେ ଜନ୍ମିଲେ ଲୀଳାପାଇଁ ॥
ପୁଣିହିଁ ରାମଚନ୍ଦ୍ର ଦାସେ । ସେହି ହୋଇଲେ ଉପଦେଶେ ॥
ସିଆଙ୍ଗେ ଶ୍ୟାମଳା ଅଟନ୍ତି । ସାଧେ ରାମଚନ୍ଦ୍ର ବୋଲାନ୍ତି ॥
ପୁଣିହିଁ ଗୋପୀନାଥ ଦାସେ । ସେହି ପାଇଲେ ପ୍ରେମରସେ ॥
ଶ୍ରୀମତୀ ନିତ୍ୟ ଅଭିଳାଷୀ । ଭକ୍ତି ସାଧନେ ଜନ୍ମ ଅଛି ॥
ପୁଣି ମିଳିଲେ ହରିଦାସେ । ହରିନାମ ଲଭିବା ଆଶେ ॥
ଯେ ହରି ପ୍ରିୟସୃଷ୍ଟ ଅଟନ୍ତି । ହରିଦାସ ନାମେଣ ଖ୍ୟାତି ॥
ବାମନ ମହାପାତ୍ରେ ପୁଣ । ହରି ନାମ ଧଇଲେ କର୍ଣ୍ଣେ ॥
ବିଶାଖା ନାମେ ଯେଉଁ ସଖୀ । ଭକ୍ତି ସାଧନେ ମହାସୁଖୀ ॥
ନନ୍ଦନନ୍ଦନ ଦାସେ କାଳେ । ହରି ନାମକୁ ଅସ୍ୱାଦିଲେ ॥
ପଦ୍ମାନାମେ ନିତ୍ୟ ସାଧିକା । ଜନ୍ମିଲେ ଭକ୍ତିଭାବ ଯେଣ ॥
ଗହନ ପାଠକିଣୀ ଯେହି । ଲଭିଲେ ହରିନାମ ସେହି ॥
ପୁଣି ଗୋପାଳ ଦାସ ଗଲେ । ସ୍ୱାମୀରେ ଶରଣ ପଶିଲେ ॥
ଏଯେ ବିଶାଖା ନାମେ ସଖୀ । ହରି ଭଜନେ ମହା ସୁଖୀ ॥
ମିଳଣ ଦାସେ ଅଖଣ୍ଡଳ । ସେବିଲେ ସ୍ୱାମୀଙ୍କ ପୟର ॥
ଛଦ୍ମାଙ୍କ ଶଙ୍ଖା ଭାବ ଯେଣି । ଭକତ ସାଧିଲେ ମେଦନୀ ॥
ଜନାର୍ଦ୍ଦନ ପଣ୍ଡା ମିଳନ୍ତି । ହରି ନାମ ସୁଖେ ଲଭନ୍ତି ॥
କୃଷ୍ଣବଲ୍ଲଭ ଯାକୁ କହି । ଭକ୍ତି ସାଧନେ ସୁଖଦାୟୀ ॥

କୃଷ୍ଣ ଦାସଙ୍କ ଭକ୍ତି ଦେଖି । ସ୍ୱାମୀ ତାଙ୍କରେ ହେଲେ ସୁଖୀ ॥
ନବ୍ରାମନନ୍ଦତ୍ୟ ତାହାଙ୍କର । ଭଜିଲେ ଭକ୍ତି ଧନ ସାର ॥
ଶ୍ରୀବନମାଳ ଯେ ଗୋସାଇଁ । ଉପଦେଶୀ ହୋଇଲେ ସାଇଁ ॥
ନିତ୍ୟ ସେବକା ଯେ ବୋଲାନ୍ତି । ବନମାଳୀ ଦାସେ ସେହନ୍ତି ॥
ଗୋଦାବରୀ ସମ୍ପୃସ୍ତରୁ ଯେ । ସେହି ହୋଇଲେ ଉପଦେଶେ ॥
ଯା ନାମ ମଦନ ସୁନ୍ଦରୀ । ସେହନ୍ତି ଭକ୍ତିକ ହସ୍ତାର ॥
କାହ୍ନୁ ଖୁଣ୍ଟିଆ ଉପଦେଶ । ସେବ ଲଭି ଭକ୍ତି ବିଶେଷ ॥
ଚନ୍ଦ୍ରାବଳୀ ଯାହାକୁ କହି । କାହ୍ନୁ ଖୁଣ୍ଟିଆ ଜନ୍ମ ସେହି ॥
ଶିଷ୍ୟ ଯେ ଜଗନ୍ନାଥ ଦାସ । ସେହି ପାଇଲେ ପ୍ରେମରସ ॥
ପ୍ରେମାନନ୍ଦ ନିତ୍ୟବିହାରୀ । ସେ ଅଟି ମର୍ତ୍ତ୍ୟେ ଅବତରି ॥
ଅମୃତବାନ ଦାସ କାହିଁ । ସେତେବେଳେ ଉପଦେଶୀ ହେଲେ ॥
ଯୋଗନନ୍ଦା ଯାହାକୁ କହି । ଭକ୍ତିରେ ସୁଖୀ ସେ ଅଟଇ ॥
ଏ ସବେ ନିତ୍ୟ ଅଭିଳାଷୀ । ଅଟନ୍ତି ଜଗନ୍ନାଥ ଦାସୀ ॥
ନିତ୍ୟଯୁଗଳ ସେବାମାନ । କରୁଥିଲେ ଯାହା ସେବନ ॥
ଜଗନ୍ନାଥେ ଯୁଗଳ ପାଇ । ପୁଣ ସେବିଲେ ଏହଠାଇଁ ॥
ଶ୍ରୀଜଗନ୍ନାଥଙ୍କୁ ଭଜନ୍ତି । ଅନ୍ୟ ଦେବତା ନ ଜାଣନ୍ତି ॥
ଗୁରୁ ପାଇଲେ ଜଗନ୍ନାଥ । ସକଳ ମନ୍ତ୍ରଯନ୍ତ୍ର ତନ୍ତ୍ର ॥
ଶ୍ରୀହରି ନାମ ମନ୍ତ୍ରବୀଜ । ସହଜେ ପାଇଲେ କାମବୀଜ ॥
ଦେବତା ପାଇଁ ଜଗନ୍ନାଥ । ରସେ ପାଇଲେ ପ୍ରେମତତ୍ତ୍ୱ ॥

ଶ୍ଳୋକଃ ।

ଯଥୈବ ବ୍ରହ୍ମାଣ୍ଡେ ସ୍ଥିର ମନୁଜ ଦେହୋଽପିଚ ତଥା
ଜଗନ୍ନାଥୋ ଭଦ୍ରା ବଳଭଦ୍ର ବଳଭଦ୍ରସ୍ତ ଭସ୍ମୃତଂ ।
ତଥା ଜ୍ୟୋତଶ୍ଚକ୍ରେ ବସ୍ତୁ ପରମନାଡ଼ୀ ନିସ୍ତମ୍ଭିତ
ଭୁରସ୍ତ୍ୱନ୍ତେ ଧାମ ପ୍ରଭବତ ହରେଃ କାଳକଳସ୍ୟ ॥

ଜାଟ ବ୍ରହ୍ମାଣ୍ଡର ମଧ୍ୟର । ମନୁଷ୍ୟ ସ୍ଥିର ଯେ ଅସ୍ଥିର ॥

ଯାକୁ ଭଜନ୍ତି ନିରନ୍ତର । ଜ୍ୟୋତିର୍ମୟ ରୂପ ଯାହାର ॥
ଜଗନ୍ନାଥ ବଳଭଦ୍ରରେ । ସୁଦରଶନ ସୁଭଦ୍ରାରେ ॥
ପରମ ପରମେ ଈଶ୍ୱର । ଚଉଦ ବ୍ରହ୍ମାଣ୍ଡ ଭୂପର ॥
କାଳକୁ ନିମିଷ ମଣନ୍ତି । କାଳ ନ ପାରେ ତାଙ୍କୁ ଚିନ୍ତି ॥
ଯାହାର ଅନ୍ତ ପାଇବାରେ । ନାହିଁ କି ଚତୁର୍ଦ୍ଦଶ ପୁରେ ॥
ତାହାଙ୍କୁ ନିକଟେ ପାଇଲେ । ପ୍ରତ୍ୟହ ଦରଶନ କଲେ ॥
ସକଳ ତୀର୍ଥ ଦେବବ୍ରତ । ପାଇ ପୁରୁଷୋତ୍ତମ କ୍ଷେତ୍ର ॥
ସାକ୍ଷାତେ ପ୍ରଭୁ ଭଗବାନ । ସ୍ୱରୂପ ହୋଇଲେ ଚୈତନ୍ୟ ॥
ସର୍ବ କ୍ଷେତ୍ରଦେବ ଛାଡ଼ିଲେ । ଯେଉଁ କ୍ଷେତ୍ରକୁ ଆଶ୍ରା କଲେ ॥
ଅବର ଯତି ଯେ ସନ୍ନ୍ୟାସୀ । ଗୃହୀ ବୈରାଗୀ ତୀର୍ଥବାସୀ ॥
ଅଶେଷ ପୁରୁଷୋତ୍ତମ କଲେ । ବ୍ରହ୍ମେ ଅନନ୍ଦେ ମିଶିଗଲେ ॥
ସେ ଯେ ଷୋଡ଼ଶ ଶିଷ୍ୟଗଣ । ଶ୍ରୀ ଅଚ୍ୟୁତଙ୍କ ସାଧୁ ପୁଣ ॥
ଷୋଳଦଳରେ ଷୋଳସଖୀ । ଏବେ ପୁରୁଷ ଅଙ୍ଗେ ଲେଖି ॥
ଭକ୍ତି ଭେଦେ କରିବା ଅର୍ଥେ । ଜନ୍ମ ହୋଇଲେ ଅପି ମର୍ତ୍ତ୍ୟେ ॥
ସମସ୍ତେ ମିଳି ଏକଚିତ୍ତେ । ପୁଚ୍ଛିଲେ ସ୍ୱାମୀ ସନ୍ନିଧାନେ ॥
ଜାଣିଲେ ହରିନାମ ସାର । ମନ୍ତ୍ର ରାଜତେଜ ଯେ ବିସ୍ତର ॥
ରାଧା କୃଷ୍ଣ ପ୍ରେମ ଚରିତ । ଜଗନ୍ନାଥଙ୍କର ବୃତ୍ତାନ୍ତ ॥
ଏବେ ପ୍ରେମ କେମନ୍ତ ହୋଇ । କହିବା ଲେଉଟି ଗୋସାଇଁ ॥
ଶୁଣି କହନ୍ତି ଗୁରୁଦେବ । ସକଳ ଶିଷ୍ୟେ ଶୁଣ ଭାବ ॥
ଚୈତନ୍ୟ ଚରିତାମୃତ । ଗୋଦାବରୀ କୂଳ ଚରିତ ॥
ରାମେ ରାମାନନ୍ଦ ସଙ୍ଗେ । ପୁଚ୍ଛିଲେ ଶଚୀଙ୍କ କୁମରେ ॥
ଯା ରାମାନନ୍ଦ ରାୟ କହ । ତୁମ୍ଭଙ୍କୁ କହିବି ତା ମୁହିଁ ॥
ବିଦ୍ୟା ମଧ୍ୟରେ ଯେଉଁ ସାଧ୍ୟ । ଭକ୍ତିବିଦ୍ୟା ସର୍ବସୁନ୍ଦର ॥
କୀର୍ତ୍ତି ମଧ୍ୟରେ ଶ୍ରେଷ୍ଠ କହ । କୃଷ୍ଣ ଭକ୍ତିରେ ଖ୍ୟାତି ଯେହୁ ॥
ସମ୍ପତ୍ତି ବୋଲି ଏହା ଜାଣି । ଯେ ରାଧା କୃଷ୍ଣ ପ୍ରେମେ ଧନୀ ॥

ଯେ କୃଷ୍ଣ ପ୍ରେମ ନ ଜାଣଇ । ତାହାକୁ ଦୁଃଖୀବୋଲି କହି ॥
ରାଧାକୃଷ୍ଣଙ୍କ ପ୍ରେମ ଜାଣି । ସେ ସାଧୁ ମୋକ୍ଷ ଶିରୋମଣି ॥
ଜ୍ଞାନୀଙ୍କ ମଧ୍ୟେ ଜ୍ଞାନୀ ସେହି । ରାଧା କୃଷ୍ଣ ପ୍ରେମ ଜାଣଇ ॥
ଶ୍ରେଷ୍ଠତର ଶ୍ରେଷ୍ଠ ଶ୍ରେଷ୍ଠ ସେହି । ଯେ ରାଧାକୃଷ୍ଣ ପାଦ ଧ୍ୟାୟି ॥
ଶ୍ରେଷ୍ଠତର ଏହି ସ୍ମରଣ । ଶ୍ରୀ ରାଧାକୃଷ୍ଣଙ୍କର ନାମ ॥
ଧ୍ୟାନରେ ଶ୍ରେଷ୍ଠ ଅନୁସ୍ମରଣ । ଶ୍ରୀରାଧାକୃଷ୍ଣଙ୍କ ଚରଣ ॥
ନିବାସ ମଧ୍ୟେ ଦିବ୍ୟ ସ୍ଥାନ । ପୁରୁଷୋତ୍ତମ ଯାହା ନାମ ॥
ଶ୍ରବଣ ମଧ୍ୟେ ଶ୍ରେଷ୍ଠ ସେହି । ରାଧାକୃଷ୍ଣ ପ୍ରେମ ଜାଣଇ ॥
ଉପାସନାରେ ଏ ପ୍ରଧାନ । ରାଧା କୃଷ୍ଣ ଯୁଗଳ ନାମ ॥
କହିଲେ ରାୟେ ରାମାନନ୍ଦ । ଶୁଣି ତୋଷ ଚୈତନ୍ୟ ଚନ୍ଦ୍ର ॥
ସେ କଥା କହିଲୁ ତୁମ୍ଭରେ । ହୃଦରେ ଘେନ ନିରନ୍ତରେ ॥
ଶୁଣି ଆନନ୍ଦ ଶିଷ୍ୟ ଗଣ । ନମିଲେ ସ୍ୱାମିଙ୍କ ଚରଣ ॥
ସେହି ସଙ୍ଗତେ ଦିବାକର । ନମିଲା ସ୍ୱାମିଙ୍କ ପୟର ॥

ଇତି ଶ୍ରୀ ଜଗନ୍ନାଥାମୃତେ ଶ୍ରୀ ଅତି ବଡ଼ ଜଗନ୍ନାଥଦାସ ଗୋସାଇଁ
ଅନୁକ୍ରମଣି ନାମ ତ୍ରୟୋଦଶୋଽଧ୍ୟାୟଃ ।



## ଚତୁର୍ଦ୍ଦଶ ଅଧ୍ୟାୟ ।

ଉଦୟ ବନ୍ତ ଦିବାକର । ଶ୍ରୀଅତି ବଡ଼ଙ୍କ ଚତୁର ॥
ପୁଣିହି ଦିନେ ବଇଠେ । ପୁଚ୍ଛିଲେ ଶ୍ରୀପ୍ରଭୁଙ୍କ ଭାବେ ॥
ଶ୍ରୀ ଗୁରୁ ମନ୍ତ୍ରବୀଜ ମାନ । କେତେଗୁଣ କହିବା ପଚ୍ଛିନ୍ତି ॥
ଗୋସାଇଁ ଆନନ୍ଦ ହୋଇଲେ । ସର୍ବ ଶିଷ୍ୟେ ଶୁଣ ବୋଇଲେ ॥
ବୃହତ ବାମନ ପୁରାଣ । ତହିଁରେ ଯେ ଅଛି ପ୍ରଚ୍ଛିନ୍ନ ॥
ସନକ ଆଦି ମୁନିଗଣ । ସତ୍ୟଲୋକେ ମିଳିଲେ ପୁଣ ॥
ବ୍ରହ୍ମାଙ୍କ ଅଗ୍ରେ ସର୍ବେ ହୁନ୍ତେ । ନାରଦ ମିଳିଲେ ଏମନ୍ତେ ॥

ପ୍ରଣାମ କଲେ ବିଧିମତେ । ଯେ ଅଛି ପୂର୍ବର ଚରତେ ॥
ବ୍ରହ୍ମା ନାରଦକୁ ସ୍ନହିଁଲେ । ନିକଟେ ଆସ ମୋ ବୋଇଲେ ॥
ଶୁଣି ନାରଦ ଭୂମିଗତେ । ବନସ୍ତେ ନମିଲେ ଭୂଇଁତେ ॥
ଛଟି ଯୋଡ଼ିଲେ ବେନିହସ୍ତ । କୃପାକର ହେ ଲୋକନାଥ ॥
କେଉଁ ମନ୍ତ୍ର ଅବଧି କରି । ପ୍ରାଣୀ ସଂସାରୁ ଯାନ୍ତି ତରି ॥
କିରୂପେ ଧ୍ୟାନ ଯେ କରିବା । କେଉଁ ସ୍ଥାନ ହୃଦେ ଚିନ୍ତିବା ॥
ଏମନ୍ତ ନାରଦ ବଚନ । ଶୁଣି ଆନନ୍ଦ ବ୍ରହ୍ମାମନ ॥
ଆନନ୍ଦେ ଆଲିଙ୍ଗନ କଲେ । ଶିର ଆଘ୍ରାଣି ଚୁମ୍ବଦେଲେ ॥

ଶ୍ଳୋକଃ ।

ଧନ୍ୟୋଽସି ପୁତ୍ର କୃଷ୍ଣସ୍ୟ ପଦଦ୍ୱନ୍ଦେ ମତିସ୍ତବ ।
ତସ୍ମାତ୍ତ୍ୱମାଧିକୋ ମନ୍ୟେ କୃତାର୍ଥୋଽସି ନ ସଂଶୟଃ ॥

ଧନ୍ୟ ତୁ ଧନ୍ୟ ମୋର ସୁତ । କୃଷ୍ଣେ ପ୍ରବେଶ କଲୁ ଚିତ୍ତ ॥
ତୋର ଭାବ ଭକ୍ତିରେ ମୁହିଁ । କୃତାର୍ଥ ଅଭୀଷ୍ଟ ହେଲଇଁ ॥
ଅନେକ ମନ୍ତ୍ର ଏ ସଂସାରେ । ଛନ୍ତି ନାନା କର୍ମ ଭାବରେ ॥
ସେ ମନ୍ତ୍ରେ ପ୍ରୟୋଜନ ନାହିଁ । ଜପ କରିବ ତାହା ପାଇ ॥
ଯେ ଯେତେ ମନ୍ତ୍ରକୁ ଭଜନ୍ତି । ଭକ୍ତିରେ ପ୍ରବେଶ ନୁହନ୍ତି ॥

ଶ୍ଳୋକଃ ।

ଏକୋଽସ୍ତି ମନ୍ତ୍ରରାଜଶ୍ଚ ଦୁର୍ଲଭୋ ସଚରାଚରେ ।
ତେଽପି ନୀଳାଦ୍ରିଶିଖରେ ସ୍ଥିତଂ ନାତ୍ର ସଂଶୟଃ ॥

ଏକା ଶ୍ରୀ ମନ୍ତ୍ରରାଜ ଭାବ । ସଚରାଚରରେ ଦୁର୍ଲଭ ॥
ସେ ନୀଳ ପର୍ବତ ଉପରେ । ସ୍ଥିତି ଦାରୁ କଳେବରେ ॥
ଏ ମନ୍ତ୍ର ଭେଦ ଅଛି ତହିଁ । ପ୍ରେମ ଭକ୍ତିରେ ଭଜ ତାଇ ॥
ସେ ମନ୍ତ୍ର ନାମ ମନ୍ତ୍ରରାଜ । ତହିଁର ଅଦ୍ୟରେ ବିରାଜ ॥
ମଧ୍ୟରେ ଦଶାକ୍ଷର ହୋଇ । ତ୍ରୈଲୋକ୍ୟ ତିନି ବୀଜ ଅଛଇ ॥
ସେ ମନ୍ତ୍ର ନ ଜାଣନ୍ତି କେହୁ । ଉତ୍ତମ ମନ୍ତ୍ର ଅଟଇ ॥

ଜୀବନ ମୁକ୍ତ ଯେଣ୍ଟି ନର ; ମନ୍ତ୍ରରାଜ ଅର୍ଥ କର ॥
ହେ ଭଗବାନ ଚିଦାନନ୍ଦ । ସେ ମନ୍ତ୍ରରାଜ ମୋତେ କହ ॥

ଶ୍ଳୋକଃ ।

ଶୃଣୁ ପୁତ୍ର କଥୟାମି ତ୍ରୈଲୋକ୍ୟେ ମନ୍ତ୍ର ଦୁର୍ଲ୍ଲଭଂ ।
ସାରିସାର ସଟ୍ଚକ୍ରସ୍ଥ ଉକ୍ତସ୍ୟ ଦୃଢ଼ ମାନସ ॥

ଶୁଣ ହେ ପୁତ୍ର ମନଦେଇ । ତ୍ରୈଲୋକ୍ୟେ ଦୁର୍ଲ୍ଲଭଷ୍ଟ ଏହ ॥
ସାର ଉପରେ ଅଟେ ସାର । ଦୁର୍ଲ୍ଲଭ ଭକତ ଭକ୍ତର ॥
ଅଦ୍ୟରେ ଓଁକାର ଲେଖିବ । ଶନବୀଜକୁ ବସାଇବ ॥
ଷୋଡ଼ଶ ଅକ୍ଷର ବସାଇ । ବନ୍ଦୁ ଥାପିବ ପାଶେ ନେଇ ॥
ତଳ ପାଳକର ଦ୍ୱିଗୁଣ । ଷଡ଼ଷ୍ଟ ହୋଇବ ପ୍ରମାଣ ॥
ତା ମଧ୍ୟେ ଦଶାକ୍ଷର ଥୋଇ । ଯେଉଁ ଜପେ ଭବ୍ୟ ସାଧୁ ସେହି ॥

ଶ୍ଳୋକଃ ।

ଏତତ୍ତୁ ପରାପରଂ ବ୍ରହ୍ମ ଦେବାନା ମପି ଦୁର୍ଲ୍ଲଭଂ ।
ତନ୍ମନ୍ତ୍ରେଦେବତାଃ ସର୍ବ୍ବେ ବ୍ରହ୍ମାଦ୍ୟାଃ ଜିତକୌତସାଂ ॥

ଏ ମନ୍ତ୍ରରାଜର ଉପରେ । ନାହିଁଟି ମନ୍ତ୍ର ଏ ସଂସାରେ ॥
ଯେତେ ଦେବତା ମଧ୍ୟେ ଗଣ । ତାଙ୍କୁ ଏ ଦୁର୍ଲ୍ଲଭ ପ୍ରମାଣ ॥
ଓଁକାର ଅଟେ ସେଦେବ । ଶକ୍ତି ବୀଜ ସୁଭଦ୍ରା ଭବ ॥
ହ୍ରୀଂ ବୀଜ ସୁଧାମୃତ । ବାମବୀଜ ଶ୍ରୀ ଜଗନ୍ନାଥ ॥
ଏମନ୍ତ ଭାବ ଯେ ଜାଣନ୍ତି । ବୈଷ୍ଣବବର ସେ ବୋଲନ୍ତି ॥

ଶ୍ଳୋକଃ ।

କୃଷ୍ଣସ୍ତ'ସ୍ତେ ହ୍ରଦ ସଥା ପୃଷ୍ଟେ ପ୍ରେମାଙ୍ଗ ସୁନ୍ଦରୀ ।
ବାମା ଶ୍ୟାମା ଶ୍ୟାମରୂପା ଦକ୍ଷେ ଭଦ୍ରା ସମନ୍ୱିତଂ ॥

ଶ୍ରୀକୃଷ୍ଣ ଅଙ୍ଗେ ସଥା ଛନ୍ତି । ପୃଷ୍ଟେ ପ୍ରେମ ସୁନ୍ଦରୀ ସ୍ଥିତ ॥
ବାମ ପାର୍ଶ୍ୱରେ ଶ୍ୟାମା ରହି । ଭଦ୍ରା ଦକ୍ଷିଣେ ତସଙ୍ଗର ॥
ପାଦେ ସେବନ୍ତ ରସବତୀ । ଶେଷ ପଲଙ୍କ ପରେ ସ୍ଥିତ ॥

ଓଁକାର ରୂପୀକ୍ଷେତ୍ର ଏହି । କ୍ଷେତ୍ର ଯେ ବିନ୍ଦାବନ ହୋଇ ॥
ଉପରେ ଅର୍ଦ୍ଧ ମାତ୍ରା ଯେହି । ସ୍ୱଶକ୍ତି ରୂପେ ବିରାଜଇ ॥

ଶ୍ଳୋକଃ ।

ବ୍ରହ୍ମାଣ୍ଡର ମଧ୍ୟଂ ଦେହସ୍ୟ ଯଥାସୌ ପୁରୁଷୋତ୍ତମଃ ।
ତବ ସ୍ନେହେନ ବତ୍ସେନ୍ଦ୍ର ତତ୍ସର୍ବଂ କଥିତଂ ମୟା ॥

ଏ ଜଗନ୍ନାଥ ପରବ୍ରହ୍ମ । ଏଥି ବାହାର ଯେତେ ବ୍ରହ୍ମ ॥
ପୁରୁଷୋତ୍ତମ ଶ୍ରେଷ୍ଠ ଅଛି । ଏଥୁ କେତେ କ୍ଷେତ୍ର ଜନ୍ମିଛି ॥
ଏ ମନ୍ତ୍ରରାଜ ମହାମନ୍ତ୍ର । ଏଥୁ ବାହାର କେତେ ମନ୍ତ୍ର ॥
ତୁମ୍ଭ ସ୍ନେହରେ ଧନ୍ଦମଣି । ଫେଡ଼ି କହିଲି ତତ୍ତ୍ୱବାଣୀ ॥
ଅଦ୍ୟରେ ତନ୍ତ୍ରରାଜ ହୋଇ । ଚତୁର୍ଥ ଭବେ ତାହା କହି ॥
ଶିବ ପ୍ରେମରୂପା ସ୍ୱତନ୍ତ୍ର । ହସି ଶବଦ ସ୍ୱଧା ହୋନ୍ତ ॥
ତନ୍ତ୍ରଂ କୃଷ୍ଣ ଅଙ୍ଗ ନିରୂପି । ଗୋପେ ଜନ ବନ୍ଧୁର ବପୁ ॥
ଏରୂପେ ଭକ୍ତିର ସ୍ଥିତିଲ । ହୋଇଛି ଶୁଣ ସାଧୁଜନ ॥

ଶ୍ଳୋକଃ ।

ସୁଗୁପ୍ତା ଗୁପ୍ତ ଭାବେନ ହୃଦ ଗୁପ୍ତେନ ସାଧୟେତ୍ ।
ଏତତ୍ ପରଂ ତରଂ ରୂପଂ ନ କୃଷ୍ଣ ସୁଖଦାୟକଂ ॥

ଗୁପତେ ଗୁପତଟି ଏହି । ଭାବ ରଖ ହୃଦରେ ନେଇ ॥
ସାଧନା କର ନିରନ୍ତର । ଲଭିବ ଗୋବିନ୍ଦ ପୟର ॥
ଏଥୁ ଅନ୍ତରେ ମନ୍ତ୍ର ଯେତେ । ଭକ୍ତି ନ ଲଭି କଦାଚିତେ ॥
ଶ୍ରୀକୃଷ୍ଣଙ୍କ ସ୍ୱଙ୍ଗ ନ ପାନ୍ତି । ପ୍ରାଣୀ ପାଇବେ କାହୁଁ ଭକ୍ତି ॥
ପୁଣି ପୁଚ୍ଛିଲେ ମୁନିବର । ହେ ବ୍ରହ୍ମ ମୋତେ କୃପାକର ॥
ଯହିଁ ସେ ମନ୍ତ୍ର କହ ମୋତେ । ସାଧିବି ଧରି ହୃଦଗତେ ॥
ପଡ଼ିଣ ବ୍ରହ୍ମାଙ୍କ ପୟର । ପୁଣି ଯୋଡ଼ିଲେ ବେନିକର ॥
ମନ୍ତ୍ରରାଜ କର ପ୍ରଦାନ । ହେଉ ଏ ଜନ୍ମ ନିସ୍ତାରଣ ॥
ହେ କୃପାସିନ୍ଧୁ କୃପାକର । ମନ୍ତ୍ରରାଜ ଦେଇ ଉଦ୍ଧର ॥

ଅଜ ପର୍ଯ୍ୟନ୍ତେ ମୋ ଜୀବନ । ନିଷ୍ଫଳ ହୋଇଅଛି ଜନ୍ମ ॥
ଏ ଦୁଃଖ ସାଗରୁ ଉଦ୍ଧର । କହ ସେ ମନ୍ତ୍ରରାଜ ସାର ॥
ଏକେତ ତୋର ପୁତ୍ର ମୁହିଁ । ଭଣ ଏ ଭକ୍ତି ଧନ ଦେଇ ॥
ଭବସାଗରରୁ ଉଦ୍ଧର । ଦେଇଣ ମନ୍ତ୍ରଙ୍କ ଈଶ୍ୱର ॥
ଆନନ୍ଦ ହୋଇ ବେଦବର । ବୋଇଲେ ସାଧୁ ପୁତ୍ର ମୋର ॥
ମୋତେ ପୁଚ୍ଛିଲୁ ମନ୍ତ୍ରରାଜ । ତୋ ଲାଗି ହେଲା ମୋର କାର୍ଯ୍ୟ ॥
ସେ ଯେ ଷୋଡ଼ଶାକ୍ଷର ହୋଇ । ତହୁଁ ଯେ ଅକ୍ଷରେ ବୋଲଇ ॥
କ ଅବା ବାଟର ନାଦ ସେହ । ମୁଖରେ ମନ୍ତ୍ର ଉଚ୍ଚାରଇ ॥
ନିର୍ମଳ ଭକ୍ତି ହୋଏ ତାର । ଲଭଇ ଶ୍ରୀକୃଷ୍ଣ ପୟର ॥
ଏବେ କହିବା ତୁମ୍ଭ ତହିଁ । ଯେତେଣ ନିସ୍ତାର ଅସ୍ମା ହୋଇ ॥
ପସ ରମେ କାମବୀଜରେ । ତନିକି ଲେଖିବ ଆଦ୍ୟରେ ॥
ମଧ୍ୟେ ଦଶାକ୍ଷର ଲେଖିବ । ପୁରଣାନ୍ତେ ଜନ କରିବ ॥
ଏମନ୍ତେ ଷୋଡ଼ଶ ଅକ୍ଷର । ଏ ମନ୍ତ୍ରରାଜ ନାମ ସାର ॥

ଶ୍ଳୋକଃ ।

କୁଟସ୍ଥା ଚ ତତୋ ଲକ୍ଷ୍ମୀଃ ଶକ୍ତ୍ୟନ୍ତେତୁ ସାଧୁ କୋତ୍ତମଂ ।
ମନ୍ତ୍ର ମନ୍ତ୍ରଂ ପରଂ ନାସ୍ତି ନ ଦେବା ନୈବ ଯୋଗିନଃ ॥

ଏ ମନ୍ତ୍ରରାଜ ଧର ଚିତ୍ତେ । କୁହରେ ଧାଇବ ନିରତେ ॥
ଉତ୍ତମ ସାଧୁ ସେ ବୋଲନ୍ତି । ଏମନ୍ତ ପରେ ମନ୍ତ୍ର ନାହିଁ ॥
ବ୍ରହ୍ମ ଯୋଗୀଙ୍କି ଅଗୋଚର । ଦେବେ ଜାଣିବେ କାର୍ଯ୍ୟ ସାର ॥
ଦେବଙ୍କ ମଧ୍ୟେ ଯେସନ୍ତ ହର । ଯୋଗିଙ୍କ ମଧ୍ୟେ ତ୍ରିପୁରର ॥
ଦେବୀରେ ଶ୍ରେଷ୍ଠ ଦୁର୍ଗା ଲେଖି । ନାଗରେ ଯେମନ୍ତେ ବାସୁକି ॥
ଧାନୁଷ୍କୀ ମଧ୍ୟରେ କାର୍ତ୍ତିକ । ନଘରେ ଶ୍ରେଷ୍ଠ ଗଙ୍ଗା ଦେଶ ॥
ପକ୍ଷିଙ୍କ ଶ୍ରେଷ୍ଠ ଯେ ସୁପର୍ଣ୍ଣ । ଇନ୍ଦ୍ର ଶ୍ରେଷ୍ଠ ସ୍ୱର୍ଗ ଭୁବନ ॥
ଚାରି ବର୍ଣ୍ଣରେ ଶ୍ରେଷ୍ଠ ଦ୍ୱିଜ । ମନ୍ତ୍ରରେ ରାଜା ମନ୍ତ୍ରରାଜ ॥
ସମସ୍ତ କର ଷୋଳାକ୍ଷର । ଯେ ମୁଖେ କରଇ ଉଚ୍ଚାର ॥

ଚୌଷଠି କଳା ଭକ୍ତିମାନ । ବସଇ ତାହାର ଅଙ୍ଗଣ ॥
ଯେ ଗାଳ ଏତେକ ଅନ୍ତର । ମୁଖରେ କରଇ ଉଚ୍ଚାର ॥
ତୁଷସ୍ତୁ ତାହୁଁ ନିସ୍ତରଇ । ଭକ୍ତିରେ କୃଷ୍ଣପଦ ପାଇ ॥
ଏଣୁ ଯେ ସୁବୁଦ୍ଧି ହୋଇବ । ସ୍ତ୍ରୀ ପୁତ୍ର ଅନ୍ୟରେ ନ ଯିବ ॥

ଶ୍ଳୋକଃ ।

ଯେ ଜପନ୍ତି ଇଦଂ ମନ୍ତ୍ରଂ ଧ୍ୟାତ୍ୱା ରୂପ ଜଗନ୍ମୟଂ ।
ତେଽପି ଜୀବନମୁକ୍ତାଶ୍ଚ ନାନ୍ୟେ ନିସ୍ତାରଣଂ କ୍ୱଚିତ୍ ॥

ଏ ମନ୍ତ୍ର ଯେ ପ୍ରାଣୀ ଜପନ୍ତି । ଜଗନ୍ନାଥ ଅଙ୍ଗେ ଭୁବନ୍ତି ॥
ସର୍ବକାମରୁ ମୁକ୍ତ ହୋଇ । ଭକ୍ତି ଲଭନ୍ତି ନିଷ୍ଠେ ସେହି ॥
ନାନାମନ୍ତ୍ର ଉପାସ୍ୟ କଲେ । ଭକ୍ତି ନ ଲଭେ ପ୍ରାଣୀ ଭଲେ ॥
ଏମନ୍ତ ଶୁଣି ମୁନିବର । ନମିଲେ ବ୍ରହ୍ମାଙ୍କ ପୟର ॥
ନିସ୍ତାର କରିବା ନିମନ୍ତେ । ସେ ମନ୍ତ୍ର ଦିଅ ପିତା ମୋତେ ॥
ଏମନ୍ତେ ନାରଦ ବଚନ । ବ୍ରହ୍ମା ହେଲେ ବଡ଼ ମଗନ ॥
ଅଦ୍ୟରେ ପୂଜାକୁ ସାଜିଲେ । ତତକ୍ଷଣେ ହୋମ ଆରମ୍ଭିଲେ ॥
ଅଣାଇ ନବୀନ ବସନ । ଅଳଂକାର ପୁଷ୍ପ ଚନ୍ଦନ ॥
ଅଙ୍ଗ ପ୍ରୋକ୍ଷଣକୁ କରାଇ । କର୍ଣ୍ଣେ କହିଲେ ମନ୍ତ୍ର ନେଇ ॥
ଆଦ୍ୟେ ଓଁକାର ମିଶାଇଣ । ତତ୍ତ୍ୱରୂପରେ ସନାତନ ॥
ଷୋଡ଼ଶ ଅକ୍ଷର କହିଲେ । ଷୋଡ଼ଶ ନାମ ଏ ବୋଇଲେ ॥
ଭଶ୍ମମତ କାହିଁଣ ବନ୍ଧ । ଉତ୍ତମ କାଳେ ଦୀକ୍ଷା ଦେଇ ॥
ବହୁତ ମନଷା ଜୀବରେ । ବୋଇଲେ ଭଜ ନିରନ୍ତରେ ॥
ଏ ମନ୍ତ୍ର ମହିମା ଯେତେ । ଦେବତା ନ ଜାଣନ୍ତି ଚିତ୍ତେ ॥
ଶାସ୍ତ୍ରେ ଜାଣିନ ଅବା କାହୁଁ । ବେଦ ବଦନ୍ତି ଭେଦ ନୋହୁଁ ॥
ଶ୍ରୀରାଧା କୃଷ୍ଣଅଙ୍ଗୁ ଜାତ । ଭକ୍ତିର ଅଙ୍ଗ ଏ ନିଶ୍ଚିତ ॥
ଯେ ପ୍ରାଣୀ ଏ ମନ୍ତ୍ର ଭଜନ୍ତି । ଭକ୍ତି ତ ଅଳ୍ପେ ଲଭନ୍ତି ॥

ଯାର ସୌଭାଗ୍ୟ ପୂର୍ବେ ଥାଇ । ଏ ମନ୍ତ୍ର ତାହାକୁ ମିଳଇ ॥
ଅହେ ନାରଦ ମହାଭାଗ । ବ୍ରତମନ୍ତ୍ରକୁ ଚେଳ ବେଗ ॥
ଭଜ ହେ ମହାମନ୍ତ୍ର ଏହି । ଅନ୍ୟ ମନ୍ତ୍ରରେ କାର୍ଯ୍ୟ ନାହିଁ ॥
ବହୁତ ମନ୍ତ୍ର ନାନାମତେ । ଫଳ କହନ୍ତି ଏ ଜଗତେ ॥
ଦେଖାନ୍ତି ଲକ୍ଷ ଲକ୍ଷ ଫଳ । ଭକ୍ତିରେ ନୁହନ୍ତି ନିଶ୍ଚଳ ॥
ଅତ ସ୍ନେହରେ ଭକ୍ତି ଅର୍ଥେ । ଏ ମନ୍ତ୍ରଦେଲି ଭାବମତେ ॥
ଜନ୍ମାରଭାବ ଯେବେ ଅଛି । ଏମନ୍ତ ଭାବ ମନେ ବାଞ୍ଛି ॥
ପରହିଂସ୍ୟାଲୁ ସ୍ନା ନ ଦେବ । କୁହି କପଟେ ନ କହିବ ॥
ଶ୍ରୀମୂର୍ତ୍ତିରେଣ ଏହି ମନ୍ତ୍ର । ଭେଦାଇ କହିବା ଯେ ଯନ୍ତ୍ର ॥
ବ୍ରହ୍ମା ବୋଇଲେ ମୁନ ଶୁଣ । ଶ୍ରୀମୂର୍ତ୍ତି ଯନ୍ତ୍ର ପରମାଣ ॥
ଶ୍ରିଷ୍କୁ ତଳାରେ ବସଇ । ହରଷ ବଇଠି ଅଟଇ ॥
ଶ୍ଳି ଅଟଇ ମୂର୍ତ୍ତିସାର । ଗୋପୀ ବେଢ଼ ଭୁଜ ସୁନ୍ଦର ॥
ଜନ ଅଟଇ ବେଣୁକଣ୍ଠି । ବକ୍ଷର କଣ୍ଠରେ ଶୋଭନ ॥
ଲଅଷ୍ଟ ନାଭଦେଶେ ରହି । ଉପ୍ପୃଷ୍ଟ ବେଣ ଚକ୍ଷୁ ହୋଇ ॥
ସ୍ୱାହାନ୍ତ ଅଟଇ ଅଧର । ଏ ମନ୍ତ୍ରଜ ଶ୍ରୀ ମୂର୍ତ୍ତିର ॥
କ୍ଲୀମନ୍ତ୍ର ବୀଜ ଜଗନ୍ନାଥ । ଶ୍ରୀ ସୁଭଦ୍ରାଙ୍କ ସାକ୍ଷାତ ॥
ତିଶ୍ରେ ସାଧକ କଳେବର । ଉତ୍ତମୂର୍ତ୍ତି ମନ୍ତ୍ରବରର ॥
ଭେଦାଇ କହିଲଇଁ ମୁହିଁ । ଏ ମନ୍ତ୍ରବୀଜ ଜପ ତୁହି ॥
ଷୋଡ଼ଶାକ୍ଷର ଏ ଭାବରେ । କହିଲୁ ଭୁମ୍ଭର ଅଗରେ ॥
ଶୁଣି ନାରଦ ତୋଷ ହେଲେ । ଏ ମନ୍ତ୍ର ଜପ ହୃଦେ କଲେ ॥
ଶୁଣ ହେ ଷୋଳଚିଶ୍ୟେ ମୋର । ଏ ମନ୍ତ୍ର ହୃଦେ ଦୃଢ଼େ ଧର ॥
ଲେଉଟ ଜନମ ନୋହିବ । ନିତ୍ୟ ନିତ୍ୟ ସୁଖ ପାଇବ ॥
ଶୁଣି ଅନନ୍ତ ଶୁଭଗତେ । ନମିଲେ ସ୍ୱାମିଙ୍କ ଭୂରତେ ॥
ଏ ଭକ୍ତି ସାଗର ଅଟଇ । ସୁଜନେ ତର ଏହା ଗାଇ ॥
ଶ୍ରୀଗୁରୁ ଦେବଙ୍କ ପୟର । ଶରଣ ଭଣ୍ଡ ବଳାକର ॥

ଇତି ଶ୍ରୀଜଗନ୍ନାଥାମୃତେ ଶ୍ରୀ ଅତିବଡ଼ ଜଗନ୍ନାଥ ଦାସ ଗୋସାଇଁ
ଅନୁକ୍ରମଣି ନାମ ଚତୁର୍ଦ୍ଦଶୋଽଧ୍ୟାୟଃ ।



## ପଞ୍ଚଦଶ ଅଧ୍ୟାୟ ।

ଶୁଣ ସୁଜନେ ଦେଇ ଚିତ୍ତ । ଶ୍ରୀ ଅତିବଡ଼ଙ୍କ ଚରିତ ॥
ପୁଣି କହନ୍ତେ ଦୟା ବହି । ଶିଷ୍ୟମାନଙ୍କ ମୁଖ ଚାହିଁ ॥
ଶ୍ରୀ ଚୈତନ୍ୟଙ୍କ ଅନୁଗଣ । ମୁହିଁ ପୁଚ୍ଛିଲି ଶିଷ୍ୟେ ପୁଣ ॥
ସେ ପ୍ରଭୁ ଆଜ୍ଞା ଦେଲେ ଯାହା । ତୁମ୍ଭେ ସମସ୍ତେ ଶୁଣ ତାହା ॥
ଯେ ଅଟେ ବେଦର ବଚନ । ବ୍ରହ୍ମା ନାରଦ ବ୍ୟାସରେଣ ॥
ସଂହିତ ହୋଇଅଛି ଯେହୁ । ମୁ ତାହା ଆନ ନ କରଇ ॥
ମୁହିଁତ ବ୍ରାହ୍ମଣ କୁମର । ବେଦ କହନ୍ତି କେତେ ଦୂର ॥
ଅଭେଦ୍ୟ ଦେହ ବେଦ ଅଟଇ । ବେଦ ନ ଥିଲେ ଝିବା କାହିଁ ॥
ସାକ୍ଷାତ କୃଷ୍ଣ ସମ ହେବ । ତେବେହେଁ ବେଦ ନ ନିନ୍ଦିବ ॥
ବେଦ ବଚନ ଯେ ମାନନ୍ତି । ବେଦମତେ ଭକ୍ତି ସାଧନ୍ତି ॥
କୃଷ୍ଣର ଯେତେ ଅବତାର । ବେଦବଚନେ ସେ ପ୍ରଚୁର ॥
ଯେ ବେଦ ବାକ୍ୟକୁ ତେଜନ୍ତି । ଅନ୍ତେ ଅନ୍ତକକୁ ଦେଖନ୍ତି ॥

ଶ୍ଲୋକଃ ।

ଶ୍ରୁତିଃ ସ୍ମୃତିଃ ମମୈବାଜ୍ଞା ଯସ୍ତୁ ମୂଢ଼ଃ ସ ଲଂଘତି ।
ଆଜ୍ଞାଚ୍ଛେଦୀ ମମଦ୍ୱେଷୀ ମଦ୍ଭକ୍ତୋଽପି ନ ବୈଷ୍ଣବଃ ॥

ନିତ୍ୟସ୍ୱାତ୍ମକ ଭଗବାନ । ଏରୂପେ ଶ୍ରୀମୁଖ ବଚନ ॥
ବେଦପୁରାଣ ଧର୍ମଶାସ୍ତ୍ର । ମୋର ବଚନୁ ଏହି ଜାତ ॥
ଏଣୁ ଯେ ପ୍ରବୃତ୍ତି ହୋଇବ । ବେଦ ବଚନ ନ ଛାଡ଼ିବ ॥
ଯେ ବେଦବାକ୍ୟ ନ ମାନନ୍ତି । ମୋହର ଶତ୍ରୁ ସେ ଅଟନ୍ତି ॥
ବ୍ୟାସ ବଚନ ଯେ ଭଙ୍ଗନ୍ତି । ସେହି ଅଶେଷ ଦୁଃଖ ପାନ୍ତି ॥

ଏମନ୍ତେ ଦେବ ଚଇତନ୍ୟ । ପୂର୍ବେ କହନ୍ତେଇ ଏ ବଚନ ॥
ଏବେ ଯେ ଭକ୍ତି ମାର୍ଗ ହୋଇ । ସିଗ ବଇଧି ମାର୍ଗେ ହୁଇ ॥
ଅଗ ବଇଧ ସଙ୍ଗ ପଛେ । ଭକତ ସାଧିନ ପ୍ରତ୍ୟକ୍ଷେ ॥
କହଇ ବସ୍ତ୍ର ଧବାଳର । ବଇଧି କର୍ମର ବସ୍ତୁର ॥
ଗୁସ୍ତି କର ଶୁଦ୍ଧ ଚଇତ । ସାଧନ୍ତ୍ର ବିଧି ଭକ୍ତି ମତ ॥
ମୋର ବଚନ ସ୍ବରବେଦ । ତେଣୁ ସେ ଢରେ ତନ୍ତ୍ରଁ ଭେଦ ॥
ତେଣୁ ଅନ୍ତକପଟ ମୁହିଁ । ଦିବ୍ଧି ହେଲେ ତାକୁ ଢଅଇ ॥
ଅଦ୍ୟରେ ହୋଇ ଉପଦେଶ । ମନକୁ ସାଧିବ ବିଶେଷ ॥
ଗୁରୁ ଗଙ୍ଗା ସାଧୁ ତୁଳସୀ । ଅଦ୍ଂଶା ବ୍ରତ ଏକାଦଶୀ ॥
ଯାହାର ସେବା ନିତ୍ୟକର୍ମ । ତହିଁରେ ସେବା ମୋକ୍ଷଧର୍ମ ॥
ଏ ବୃହନ୍ନାରଦ ପୁରାଣ । ନାରଦେ କହେ ଭଗବାନ ॥
ଭକ୍ତି ପ୍ରଥମେ ଏକ ହେଲା । ରଜ ତାମସଙ୍କ ମିଶିଲା ॥
ତିନି ପୁଣି ହେଲା ତିନ ତିନ । ଏରୂପେ ନବ ଭକ୍ତି ଜାଣି ॥
ଗୋଷ୍ଠିକ ନବ ଗୁଣକଲା । ଏମନ୍ତେ ଏକାଶୀ ହୋଇଲା ॥
ଏକାଶୀ ଏକ ଏକ କର । କହୁ ବା ଶୁଣ ତା ବିସ୍ତାର ॥
ଯେ ପରକୁ ମାରିବା ଅର୍ଥେ । ହରିଙ୍କି ଭଜେ କ୍ରୋଧଚିତ୍ତେ ॥
ଖଳ ପ୍ରକାର ଏ ଭଜନ । ତାମସି ଭକ୍ତି ଏହା ଜାଣ ॥
ସଂସାର ଭଣ୍ଡିବାର ପାଇଁ । ବାହାରେ କୃଷ୍ଣ ଭଜୁଥାଇ ॥
ଭିତରେ ନ ଥାଇ ସୁଚରୁ । କୁଳଟା ଯୁବତୀ ଯେମନ୍ତ ॥
ସ୍ବାମିର ବଶରେ ନ ଥାଇ । ତାମସୀ ମଧ୍ୟମାଙ୍କ ଏହି ॥
ପରର ଜପ ଭକ୍ତି ଦେଖି । ମିଛେ ବୋଲଇ ମୁଁ ପୂଛ ॥
ଭାବ ନ ଜାଣି ପୂଜେ ପୁଣ । ସେ ଭକ୍ତି ତାମସୀ ଉତ୍ତମ ॥
ଯେ ଦ୍ରବ୍ୟ ପାଇବା ଅର୍ଥରେ । ହରିଙ୍କି ପୂଜେ ଇଷ୍ଟଧାରେ ॥
ରାଜସ ମଧମା ଯେ ଭକ୍ତି । ଶୁଣ ସଜ୍ଜନେ ଦେଇ ମତି ॥
ସମସ୍ତ ଲୋକେ ଯଶ ହେବ । ବସ୍ତୁ ପୂଜନ୍ତି ମାଧବ ॥

ରାଜସ ମଧ୍ୟମା ସେ ହୋଇ । ତେବେ ତହିଁ ଭକ୍ତି ମଛଇ ॥
ଭକ୍ତି ମାର୍ଗକୁ ଯେ ଉଦ୍ଦେଶ । କହୁଣ ଭଜେ ପୀତବାସ ॥
ରାଜସ ଉତ୍ତମା ବୋଲଇ । ଅପଣା ପାପ ବିନାଶଇ ॥
ହୋଇବ ଉତ୍ତମ ମୋ ମତ । ଏମନ୍ତେ ଯେ ପ୍ରାଣୀ ଭଜନ୍ତ ॥
ସାଯୁଜ୍ୟ ମଧ୍ୟମା ବୋଲାଇ । ଯେ ସର୍ବ ଅତ୍ମା କୃଷ୍ଣେ ଦେଇ ॥
ବୁଦ୍ଧି ଇନ୍ଦ୍ରିୟ ଦେଇ ନରେ । ଦାସୀର ପ୍ରାୟେ ସେବାକରେ ॥
ଭକ୍ତି ମାନଙ୍କ ଶ୍ରେଷ୍ଠତର । ଉତ୍ତମ ସାତ୍ତ୍ୱିକ ବସ୍ତୁର ॥
ବସ୍ତୁ ମହମା କର୍ଣ୍ଣେ ଶୁଣି । କର୍ମଲେ ଭ୍ରବନ୍ତ ଯେ ପ୍ରାଣୀ ॥
ସାତ୍ତ୍ୱିକ ଉତ୍ତମା ସେ ଭକ୍ତି । ସାକ୍ଷାତେ କୃଷ୍ଣଙ୍କୁ ଲଭନ୍ତି ॥
ଅପଣା କର୍ମ ନ ଛାଡ଼ିବ । ଭକ୍ତି ଦୃଢ଼ କରି ଧରିବ ॥
ଯେ ପ୍ରାଣୀ ଜଗତରେ ଥାଇ । କର୍ମ ଛାଡ଼ି ଭକ୍ତି କରଇ ॥
ହରି ନୁହନ୍ତି ତୋଷ ତାରେ । ଯେ କର୍ମ ଛାଡ଼ି ଭକ୍ତି କରେ ॥

ଶ୍ଳୋକଃ ।

ଅଗ୍ନିର ପ୍ରଭବୋ ଧର୍ମଃ ଧର୍ମସ୍ୟ ପ୍ରଭୁରଚ୍ୟୁତଃ ।
ଋଷୟଃ ପିତରଶ୍ଚ ଦେବା ମହା ଭୂତାନି ଧାତବଃ ॥

ଅଗ୍ନିର ମୂଳେ ଧର୍ମ ଜାତ । ଧର୍ମେ ଧାରଣା ଏ ଜଗତ ॥
ଅଗ୍ନିରୁ ଧର୍ମଜାତ ହୋଇ । ଧର୍ମରୁ ଭକତି ମିଳଇ ॥
ଋଷି ଦେବତା ପିତୃମୂଳେ । ଅଗ୍ନିର ଜର ତତ୍ତ୍ୱ ଫଳେ ॥
ଏହୁ ଛନ୍ଦରେ ଭଗବାନ । କହନ୍ତି ମାର୍କଣ୍ଡ ଅଗ୍ରେଣ ॥
ବ୍ରାହ୍ମଣ ଯତର ସେବାରେ । ପ୍ରବର୍ତ୍ତି ଥାନ୍ତି ଯେଉଁ ନରେ ॥
ପରକୁ ନିନ୍ଦା ନ କରନ୍ତି । ସେ ନର ବୈଷ୍ଣବ ବୋଲାନ୍ତି ॥
ସମସ୍ତ ଲୋକ ହିତେ ଥାନ୍ତି । ବଚନ ମଧୁର କହନ୍ତି ॥
ଯେବେ ସଦ୍‌ଗୁଣ ନ ଘେନନ୍ତି । ସେ ନର ବୈଷ୍ଣବ ବୋଲାନ୍ତି ॥
ଅପଣା ଅତ୍ମା ପରକରି । ସମସ୍ତ ଦେଖନ୍ତି ବସ୍ତୁର ॥
ଯେ ଧର୍ମ ଶାସ୍ତ୍ରକୁ କହନ୍ତି । ସତ୍ୟ ବଚନେ ଯାର ମତ ॥

ସାଧୁ ସେବାରେ ଯାର ରୁଚି । ସେ ନର ବୈଷ୍ଣବେ ପ୍ରସିଦ୍ଧି ॥
କୂପ ତଡ଼ାଗ ଯେ କରନ୍ତି । ଯେ ମାଳା ତିଳକ ବହନ୍ତି ॥
ଗାୟତ୍ରୀ ଜପ କରେ ଯେତୁ । ବୈଷ୍ଣବ ବୋଲନ୍ତି ସେତୁ ॥
ଯେ ନର ମୋର କଥା ଶୁଣି । ତତ୍ତ୍ୱେ ଆନନ୍ଦ ହୋଏ ପୁଣି ॥
ପ୍ରେମ ପୁଲକିତ ଶରୀର । ଉତ୍ତମ ସାଧୁ ସେହି ନର ॥
ଯେବା ତୁଳସୀ ବନ ସେବି । ପୁଷ୍ପ ପ୍ରସନ୍ନେ ହୋଏ ସୁଖୀ ॥
ତା କାଷ୍ଠ କଣ୍ଠେ ଯେ ଧାରଣ । ବୈଷ୍ଣବ ଅଟେ ସେହି ଜନ ॥
ତୁଳସୀ ପତ୍ର ଅଘ୍ରାଣ । ସନ୍ତୋଷ ହୋଏ ଯେଉଁ ଜନ ॥
ମୂଳମାଟି ତିଳକ କରେ । ବୈଷ୍ଣବ ଅଟନ୍ତି ସେ ନରେ ॥
ଥାନ୍ତି ବେଦକର୍ମ ଅନ୍ତରେ । ଦେବ ଅର୍ଚ୍ଚେ ପୂଜାଙ୍କରେ ॥
ବେଦାନ୍ତ ଶାସ୍ତ୍ର ଯେ ପଢ଼ଇ । ସେ ନର ବୈଷ୍ଣବ ଅଟଇ ॥
ଶିବ କେଶବ ଦୁଇଠାରେ । ସମାନ ବୁଦ୍ଧି ଯେ ବସ୍ତୁରେ ॥
ଯେ ଜନ ଅମ୍ଭାଙ୍କୁ ଚହଇ । ସେ ଜନ ବଇଷ୍ଣବ ହୋଇ ॥
ହରି ମନ୍ଦିର ଯେ କାଟନ୍ତି । ଝଙ୍ଗ ରଙ୍ଗ ତନ୍ତ୍ର ବହନ୍ତି ॥
ଯେ ନର ଦ୍ୟନ୍ତି ନିଜଦାନ । ଯେବା ଦଅନ୍ତି ପ୍ରେମ ଅନ୍ନ ॥
ଯେ ଏକାଦଶୀ ବ୍ରତ କରେ । ଦିନ ବଞ୍ଚନ୍ତି ମୋ ସ୍ମରରେ ॥
ମୋହର ଠାରେ ଚିତ୍ତ ଦେଇ । ମୋର ଭକତ ହେବେ ଥାଇ ॥
ମୋହର ଠାବର କରେ ସ୍ତବ । ଶୁଣଇ ଭକତ ଦୁର୍ଲଭ ॥
ସେ ନର ବୈଷ୍ଣବ ବୋଲାଇ । ଘୋର ସଂସାରୁ ତରିଯାଇ ॥
ଅଟେ ଦଶ ପ୍ରକାରେ ଭକ୍ତି । ଋଷି କହଣ କହନ୍ତି ॥
ଏବେ ଦଶଭେଦ ଏହି । ପଦ ସ୍ମରଣ ଭକ୍ତି ହୋଇ ॥
ଅର୍ଚ୍ଚନା ଅଶ୍ୱତ୍ଥ ପୂଜିବ । ଅସାଧୁ ସଙ୍ଗ ପରିତେଜିବ ॥
ଦେବ ବେଦ ବିପ୍ରନିନ୍ଦନ । ସହିବ ନାହିଁ କଦାଚନ ॥
ସେବା ଅପରାଧୀ ନୋହିବ । ବେଳ ଜାଣି ସେବା କରିବ ॥
ଧର୍ମୀଙ୍କୁ ସେବା କରିବ । ଶ୍ରୀ କାପଡ଼ ଅଙ୍ଗେ ବହିବ ॥

ତଷ୍ଣୁ କ୍ଷେତ୍ରକୁ ଯାଉଥିବ । ଜଗନ୍ନାଥ ମୂର୍ତ୍ତି ଦେଖିବ ॥
ଏପରି କର୍ମ ଗୃହଥର । କରିବ ପ୍ରଭୁଙ୍କ ପାଖର ॥
ନୃତ୍ୟ କରିବ ତାଳ ବାଇ । ପାଦ ଉଦକ ଯତ୍ନେ ଖାଇ ॥

ଶ୍ଳୋକଃ ।

ଶ୍ରବଣଂ କୀର୍ତ୍ତନଂ ବିଷ୍ଣୋଃ ସ୍ମରଣଂ ପାଦସେବନଂ ।
ଅର୍ଚ୍ଚନଂ ବନ୍ଦନଂ ଦାସ୍ୟଂ ସଖ୍ୟମାତ୍ମନିବେଦନଂ ॥

କୃଷ୍ଣର କଥାମାନ ଯେତେ । ଶ୍ରବଣ କରୁଥିବ ନିତ୍ୟେ ॥
ମୁଖରେ କରିବ କୀର୍ତ୍ତନ । କୃଷ୍ଣର ଯଶ ଗୁଣମାନ ॥
ବସି ସ୍ମରିବ ନିରନ୍ତର । ଯେ ହରିନାମ ମନ୍ତ୍ରସାର ॥
ପ୍ରଭୁଙ୍କ ନୀତି ସେବାମାନ । ସେ ରୂପେ କରିବ ଧ୍ୟାନ ॥
ପୂଜାର ବିଧିମାନ ଯେତେ । ଯଥାବିଧି ସେବନେ ହସ୍ତେ ॥
କରିଣ ଥିବ ଦଣ୍ଡବତ । ଶତଅଷ୍ଟୋତ୍ତର ପର୍ଯ୍ୟନ୍ତ ॥
ସମସ୍ତ ପାଦେ ସମର୍ପିବ । ଦାସ ପ୍ରାୟେ ଅଶେଷ କରିବ ॥
ମିତ୍ର ସୁହୃଦ ପ୍ରାୟେ ହୋଇ । ଭଜୁଣ ଥିବ ବାଦ ଦୁଇ ॥
ଆତ୍ମା ଦେହେତ ସୁତବନ୍ଧୁ । ସମର୍ପି ଥିବ ଅନୁବ୍ରତ ॥
ଏମନ୍ତେ ଚଉଷଠି ଅଙ୍ଗ । ବୈଧମତ ଭକ୍ତି ସଙ୍ଗ ॥
ରଥେ ଦେଖିବ ସୁଖ ପାଇ । ଅଗ୍ରତେ ପଡ଼ୁଥିବ ଧାଇ ॥
ଜପ ଭକତ ଏ ଅଟଇ । ସଦ୍ଗୁର ଭକତ କହଇ ॥
ଶ୍ରୀ ଜଗନ୍ନାଥ ଯାତ୍ରାପର୍ବ । ଯେତେକାଳେ ଯେବା ମହୋତ୍ସବ ॥
ପୁଣ୍ୟସ୍ଥାନେ ଜପ କରିବ । ସ୍ତୁତି ନିରତେ କରୁଥିବ ॥
ସମସ୍ତ ଭକ୍ଷ ଦ୍ରବ୍ୟମାନ । ପ୍ରଭୁରେ କରି ସମର୍ପଣ ॥
ଶରଣ ପଶୁଥିବ ନିତ୍ୟ । ପାଗଳ ହୋଇ ହୃଦଗତେ ॥
ଆପଣା ଧର୍ମ ବୈଷ୍ଣବ । ତାଙ୍କ ଆଲିଙ୍ଗନ କରିବ ॥
ଶ୍ରୀ ଭାଗବତ ଯେ ପୁରାଣ । କରିବ ପଠନ ଶ୍ରବଣ ॥
ଚତୁର୍ମାସ୍ୟେ କ୍ଷେତ୍ରେ ରହିବ । କାର୍ତ୍ତିକ ବ୍ରତ ଆଚରିବ ॥

କରିବ ସମୁଦ୍ର ସ୍ନାନ । ଅନନ୍ତ ଧୂପ ଦରଶନ ॥
କଳ୍ପ ବଟକୁ ଦରଶନ । ବଢ଼ିବ ମୁକ୍ତି ମଣ୍ଡପେଣ ॥
ଗରୁଡ଼େ କର ଆଲିଙ୍ଗନ । ଦୁଃଖ କହିବ ନିବେଦନ ॥
ଏହିସ୍ଥବେ ଏକାଦଶୀ ଭକ୍ତି । କହି ସାଧୁଏ ତରିଯାନ୍ତି ॥
ଅନ୍ୟେ ଯେ ତିନି ପଥା ଭକ୍ତି । ସତ୍ତ୍ୱ ରଜ ତମ ସ୍ୱଅନ୍ତି ॥
ଏ ତିନିରେ ତିନି ମିଶନ୍ତି । ନବ ହୋଇଲା ଏହିମନ୍ତେ ॥
ଏହାକେ ନବ ମିଶିଯାନ୍ତି । ଏକାଶୀ ହୋଇଲା ବୁଝନ୍ତି ॥
ଗ୍ରନ୍ଥ ବହୁତ ହେବ ବୋଲି । ତେଣୁ ଅଧିକ ନ ଲେଖିଲି ॥
ବୋଲଇ ଦାସ ଦିବାକର । ଏହି ଭକ୍ତି ଅଟେ ମୋହର ॥

ଇତି ଶ୍ରୀ ଜଗନ୍ନାଥାମୃତେ ଶ୍ରୀ ଅତିବଡ଼ ଜଗନ୍ନାଥ ଦାସ
ଗୋସାଇଁ ଅନୁକ୍ରମଣି ନାମ ପଞ୍ଚଦଶୋଽଧ୍ୟାୟଃ ।



# ଷୋଡ଼ଶ ଅଧ୍ୟାୟ ।

ଶୁଣ ସୁଜନେ ଦେଇ ଚିତ୍ତ । ନିଷ୍ଠା ଭକତ ଚରିତ ॥
ଅଙ୍ଗରୁ କ୍ରୋଧ ଦୂରେ ତ୍ୟାଗି । ସ୍ଥିର ରହିବ ବଇରାଗୀ ॥
ସର୍ବ ଇନ୍ଦ୍ରିୟ ଶାନ୍ତ କରି । ମଉନ ବ୍ରତେ ତପସ୍ୱିଶ ॥
କ୍ଷମା ଦୋଷ କଲେ କରିବ । ଦୟା ସର୍ବଜୀବରେ ଥିବ ॥
ସର୍ବ ଜନରେ ପ୍ରିୟ ହୋଇ । ନିର୍ଲୋଭୀ ହୋଇଥିବ ସେହି ॥
ଲୋଭ ମୋହ ଶୋକ ନ ଥିବ । ଦାନ୍ତମାତ୍ରେ ଦୟା କରିବ ॥
ଦେଖିଲୁ କଥା ନ ଦେଖିବ । ଶୁଣିଲୁ କଥା ନ ଶୁଣିବ ॥
ନିତ୍ୟେ ଶ୍ରୀକୃଷ୍ଣ ଭଜୁଥିବ । ପରହିତରେ ସୁଖେ ଥିବ ॥
ସକଳ ଆଶା ସମର୍ପଣ । ଜାଣିମ ମୋ ଆଶା ପ୍ରମାଣ ॥
ସର୍ବଦା ସତ୍ୟ ନେଇ କହିବ । ପ୍ରାଣିରେ ବାଦ ନ ବାନ୍ଧିବ ॥
ଦେଲେ ନ ଦେଲେ ଉପାଟେଣ । ତହିଁ ନୋହିବ ପରବଶ ॥

ସର୍ବ ଜୀବଠାରେ କଲ୍ୟାଣ । କୁଶଳ ବାଞ୍ଛୁଥିବ ପୁଣ ॥
ସକଳ ଜୀବରେ ଏକତ । ସର୍ବବର୍ତ୍ତୀ ମିତି ପୀରତ ॥
ମତ୍ତହସ୍ତିର ତ୍ରାସ୍ୟେ ହୋଇ । ସର୍ବ ହୃଦରେ ଥିବ ଥୋଇ ॥
ଲୋକେ ବୋଲେ ଖଳବଚନ । ତେତେଣେ ବଧିର ହୋଏ କାନ ॥
ଦେହରୁ ଝାଳ ଚହୁଥାଇ । ସ୍ତମ୍ଭ ପକ୍ଷ୍ୟେ ଥାଇ ଦହ ॥
ଠାକୁର ହୁଅଇ ଯେ ପ୍ରେମ । ସ୍ୱର ଭଙ୍ଗ କହେ ବଚନ ॥
ଅପଣା ଅଙ୍ଗ ନ ଜାଣଇ । ଲୋତକ ଜଳ ପଡୁଥାଇ ॥
ଦେହ ଅସ୍ଥା ଅଛି କି ନାହିଁ । ମୋହ ଯାଇ କ୍ଷଣେ ପଡ଼ଇ ॥
ଏମନ୍ତ ଯେଉଁ ଭକ୍ତଜନ । ଏରୂପେ କରଇ ସାଧନ ॥
ଏକତ୍ୱ ଭାବେ କୃଷ୍ଣପାଦେ । ସେବା କରିବ ମନହ୍ଲାଦେ ॥
ଅନ୍ୟ ଦେବତା ନ ବାଞ୍ଛିବ । ଅନ୍ୟନ୍ତ ଶରଣ ନ ଯିବ ॥
ସ୍ୱନ ଦ୍ରବ୍ୟ କୃଷ୍ଣଠାରେ । ମନ ନକ୍ଷିବ ଜର ଜରେ ॥
ଲୋଚନେ ବନ୍ଧୁଥିବ ବାର । ବଚନେ ନାମକୁ ଉଚ୍ଚାର ॥
ବିଷୟ ଆଦ କର୍ମ ଯେତେ । ସ୍ୱପ୍ନେହେଁ ନ ବାଞ୍ଛିବ ଚିତ୍ତେ ॥
ମନ ବଚନରେ ଯୁବତୀ । ରୂପକୁ କେବେହେଁ ନ ଚିନ୍ତି ॥
ଅସତ ଯତ୍ନ ଲୋକଜନେ । ସେ କଥା ନ ବାଞ୍ଛିବ ମନେ ॥
ଭଜଣ ଗୋବିନ୍ଦ ଦୟାର । ଅନନ୍ଦ ହେବ ନିରନ୍ତର ॥
ଏରୂପେ ଅନ୍ତହାସନ୍ଦ ଥାଇ । ଅନ୍ୟରସ ଭ୍ରମିବ ନାହିଁ ॥
ଯେମନ୍ତେ ସତୀ ଯୁବତୀ । ଏକାନ୍ତେ ଭଜେ ନିଜପତି ॥
ସୁନ୍ଦର ପୁରୁଷ ଦେଖଇ । ତା ମନ ତହିଁ ନ ରସଇ ॥
ଜିହ୍ୱାରେ କରିବ କୀର୍ତ୍ତନ । କେଶବ ଯେତେ ଗୁଣମାନ ॥
ହେ ଚକ୍ର ଶ୍ରୀଧର ଚତୁର । ହେ କର୍ଣ୍ଣ ଶୁଣ ଅହରତ ॥
କୃଷ୍ଣ ନୈବେଦ୍ୟ ବେନହସ୍ତେ । ସଜାଡ଼ି ଧ୍ୱବ ଅହରତେ ॥
ଯେତେକ କୃଷ୍ଣ କଥାମାନ । ତାହା ଶୁଣିବ ଏକ କର୍ଣ୍ଣ ॥
ଲୋଚନେ ଶ୍ରୀକୃଷ୍ଣ ମୂରତି । ଦେଖି ଅନନ୍ଦ କର ମତି ॥

ସେବକ ଚରଣ ମୂଳତଟର । ଗମିବ ଶ୍ରୀକୃଷ୍ଣ ମନ୍ଦରେ ॥
ଶ୍ରୀକୃଷ୍ଣ ଛଡ଼ା ଯେ ତୁଳସୀ । ତାହା ପୂଜିବ ଅହର୍ନିଶି ॥
ତାର ବଦାନର କାର୍ଯ୍ୟ ନାହିଁ । ସେ ମହାତପ ନ ବାଞ୍ଛଇ ॥
ପ୍ରାଣ ନିରୋଧ ବର୍ତ୍ତମାନ । ସେ ବାଞ୍ଛା ନ କରଇ ମନ ॥
ତା ଯାତ୍ରା ତୀର୍ଥ କାର୍ଯ୍ୟ ନାହିଁ । ସେ ବ୍ରତ ବିଧି ନ ମାନଇ ॥
ଦାନ ନ ଘେନେ ନ ଦିଅଇ । ଜପ କରିବ ଅବା କାହିଁ ॥
ସକଳ ବ୍ରତ ଦାନ ତାର । ଅଙ୍ଗ ପଙ୍କଜ ପ୍ରଯୁରି ॥

ଶ୍ଳୋକଃ ।

ବାସୁଦେବ କଥାଳାପୈ କର୍ଣ୍ଣ ସ୍ତୋତ୍ରବେଦ୍ୟଦ ।
ତାବନ୍ନ କର୍ମିଷ୍ଠ କୁର୍ବୀତ ହିଂଶଚୋକ୍ତ ମହର୍ଷିଭିଃ ॥

ଯେ ସର୍ବ କର୍ମ ତ୍ୟାଗ କରୁ । କୃଷ୍ଣ ଚରଣ ହୃଦେ ଧରୁ ॥
ସେ ଯେବେ ଶୁଦ୍ଧ ସର୍ବ କର୍ମ । କୃଷ୍ଣ ଭଜନେ ହେଲା ଭ୍ରମ ॥
ଏଣ କୋଟି ଯେ ମହର୍ଷି । ତା କର୍ମ କରୁଛନ୍ତି ବସି ॥
ଝପଲେ ତାପି ଦ୍ୱେଷ ନ ହୁଇ । ବନ କନ୍ଦରେ ନ ବସଇ ॥
ତୀର୍ଥମାନଙ୍କେ ନ ଭ୍ରମଇ । ନାନା ଉଦ୍ୟା ସେ ନ ବହଇ ॥
ଯଜ୍ଞ ନ କରେ ଯୋଗପୀଠେ । ନ କରେ ନାନାମନ୍ତ୍ର ପାଠେ ॥
କେବଳ ଏକା ସେ ଭଜଇ । ଅନ୍ୟ ଦେବତା ନ ଜାଣଇ ॥
ଏ ସ୍ନାନ ସନ୍ଧ୍ୟା ଜପ ହୋମ । ବୈଶ୍ୱଦେବ ଦେବ ପୂଜନ ॥
ଏ କର୍ମ ତାହାଙ୍କ ପ୍ରସାଦ । ଧରୁ ତାହାର ପଦ୍ମ ପାଦ ॥
ପୂର୍ବରେ ମୁନି ଯଜ୍ଞପଥ । ଶ୍ରୀ ପ୍ରହ୍ଲାଦଙ୍କ ଅଗ୍ରର ॥
ସେ ସ୍ୱର୍ଗ ମାର୍ଗରେ ପ୍ରବେଶ । ଦନ୍ତୁଲେ ଅବଧୂତ ବେଶ ॥
କୃଷ୍ଣ କହନ୍ତେ ଉଦ୍ଧବଙ୍କୁ । ଏକାନ୍ତେ ଭଜ ତୁ ଆମ୍ଭଙ୍କୁ ॥
ଏକାଗ୍ରଭାବେ ଯୋଗ କରୁ । ଏ ଘୋର ସଂସାରୁ ତରୁ ॥
ଧ୍ରୁବ ଏକାନ୍ତ ଭକ୍ତି କଲେ । ସ୍ୱର୍ଗ ମାର୍ଗେ କୃଷ୍ଣ ପାଇଲେ ॥
ବିଧି କର୍ମ ଯେ କରିଲ । ପାଂପାତ ଜନମେ ପାଇ ॥

ଯେ ସବ ମାର୍ଗ ଅଚରଇ । ଏକା କେବଳେ କୃଷ୍ଣ ପାଇ ॥
ଯେ କୃଷ୍ଣ ପାଦ ଆଶ୍ରା କରଇ । ଅନ ଦେବତା ପାଦ ଧରଇ ॥
ସେହି ଦେବତାଫଳ ପାଇ । ବଡ଼ ଦୋଷ ସେ ଲଭଇ ॥
ଯେ ଗଣେଶ ପୂଜା କରଇ । ଅନ ଦେବତା ନ ଭଜଇ ॥
ଯେ ପୂଜଇ ପାର୍ବତୀ ହର । ନ ସେବଇ ଅନ ପଥୁର ॥
ଏବେହେଁ ତାଙ୍କ ସେବା କରୁ । ଅନ୍ତେ ତାହାଙ୍କ ରୂପଧରୁ ॥
କୃମି ହସ୍ତୀ ଜାତି ପକ୍ଷ୍ୟେ । ଯେ ଭଜେ ସେହି ରୂପ ପାଏ ॥
ଯେ ଅଟେ ସ୍ୱର୍ଗାଙ୍କ ସେବକ । ସ୍ୱର୍ଗାଙ୍କ ସଙ୍ଗ ପାଶଲୋକ ॥
ସେ ଯେବେ ପାଦଙ୍କୁ ଭଜନ୍ତି । ତହିଁକି ବଡ଼ ପଦ ପାନ୍ତି ॥
ପାଦଙ୍କ ସମାନେ ବହନ୍ତି । ସେବା ଅପରାଧେ ହୁଅନ୍ତି ॥
ବୃକ୍ଷର ମୂଳେ ଜଳ ଦେଲେ । ଡାଳ ପତ୍ର ଶୀତଳ ହେବେ ॥
ମୁଖେ ଭୋଜନ କଲେ ଅନ୍ନ । ସନ୍ତୋଷ ଅଙ୍ଗ ବୃଦ୍ଧି ମାନ ॥
ତେମନ୍ତ ଶ୍ରୀକୃଷ୍ଣ ଭଜିଲେ । ସର୍ବ ଦେବ ସନ୍ତୋଷ ହେଲେ ॥
ଯେମନ୍ତ ରାଜା ସେବିବାରେ । ସର୍ବ ଦଇନ୍ୟ ତାର ଠାରେ ॥
କୃଷ୍ଣଙ୍କୁ ଯେ ପ୍ରାଣୀ ଭାବନ୍ତି । ସର୍ବ ଦେବତାଙ୍କୁ ସେବନ୍ତି ॥
ଏହେତୁ ପଣ କାହିଁ ଛାଡ଼ିବ । ଅନ୍ୟ ଦେବେ ସେବା କରିବ ॥
ଏ କଥା ବୁଝିଣ ମନରେ । ନିଷ୍ଠା ଯେମନ୍ତ ମୁକତରେ ॥
କାହିଁରେ ତାର ବାଞ୍ଛା ନାହିଁ । ଏକା ଭକତି ଭଜେ ସେହି ॥
ଯେ ନିଜ ଅଙ୍ଗ ନ ଭାବଇ । ସେ କାହିଁ ଧର୍ମ ଅଚରଇ ॥
ତାହାର ନାହିଁ ଅଙ୍ଗବୃଦ୍ଧି । ଯେ ନାହିଁ ଶୁଦ୍ଧସାଧ୍ୟ ବିଧି ॥
ଯେତେ ସେ ତେଜଇ ଚନ୍ଦନ । ଶତେ ଦେହା ଫଳ ପାଇ ॥
ପ୍ରେମେ ସ୍ୱେଦ ଝାଙ୍କୋରେ ଯେବେ । ସ୍ନାନ କଲା ଫଳକୁ ଲଭେ ॥
ଯେବେ ସେ ନାମ ସ୍ମରୁଥାଇ । ସନ୍ଧ୍ୟା କଲାର ଫଳ ପାଇ ॥
ଯେବେ ପ୍ରେମରେ ଜରଜର । ଚକ୍ଷୁରୁ ଲୋତକ ବାହାର ॥
ତର୍ପଣ କଲା ଫଳ ପାନ୍ତି । ବନ୍ଧୁ ଲୋକଙ୍କୁ ପିତୁ ଯାନ୍ତି ॥

ଯେବେ ସେ ପ୍ରଭୁ ସେବାକରେ । ଶାକଶୁଷ୍କ ଫଳ ବସ୍ତ୍ରାବେ ॥
ସେ ସେବା ପିଣ୍ଡ ଦାନ ତାର । ପିତୃ ବସନ୍ତି ବଷ୍ଟ ପୁର ॥
ସେ ଯେତେବେଳେ ଦଣ୍ଡବତ । କରୁଥାଇ ପ୍ରଭୁ ଅଗ୍ରତ ॥
ସେ ତାର ଯାଗଫଳ ହୋଇ । ଅଶେଷ ପିତୃ ଉଦ୍ଧାରଇ ॥
ଏଣୁ ଯେ ସ୍ୱଗମାର୍ଗେ ଥାଇ । କର୍ମେ ତା ପ୍ରୟୋଜନ ନାହିଁ ॥
ଅକର୍ମ କରୁ ସେ ସୁକର୍ମୀ । କର୍ମ କରୁ କେହୁ ଅକର୍ମୀ ॥
ପୁବ ଭ୍ରରଯା ଘଟେଭ ଥାଇ । ଯେ ବେଦ କର୍ମ ନ କରଇ ॥
ମହା ଅକର୍ମୀ ସେ ଅଟଇ । ଅନ୍ତେ ଅନ୍ତକ ଦୁଃଖ ପାଇ ॥
ଯେ ସ୍ୱଜ ମାର୍ଗେ ଦଇସ୍ୱଗୀ । ତେବେ ସେ ଶୁଦ୍ଧ କର୍ମତ୍ୟାଗୀ ॥
କାହିଁରେ ବାଞ୍ଛା ନ କରିବ । ମୁହିଁ ମୋ ଦେହର ବୋଲିବ ॥
ଏ ଦ୍ରବ୍ୟ ବୋଲଲେ ମୋହର । ଭ୍ରମ ହୁଅଇ ତାହାଙ୍କର ॥
ଏ ରସ ହିନ୍ଦୁର ବଚନ । ଶ୍ରୀରୂପ ବାକ୍ୟେଣ ହୃଣ୍ଡିଲ ॥
ଜୀବଜ ସ୍ୱାମୀ ବଂଥିଲେ । ମୋର ଜଳପୀନ ବୋଇଲେ ॥
ଦୂତ ବୋଇଲେ ତାଙ୍କୁ ସୁହିଁ । ଭୂମୂର ମୋହ ଛାଡ଼ ନାହିଁ ॥
ନିସ୍ପୃହା ଚଦିସ୍ୱଗୀ ଯେ ହେବ । ମୋହର ବୋଲି ନ ବୋଲିବ ॥
ଦ୍ରବ୍ୟ ବୋଲିବ ଯେବେ ମୋର । ବଇଧ କର୍ମ ହେଲା ତାର ॥
ମୋର ବୋଇଲେ ଜନ୍ମହେବ । ଏ ଜନ୍ମ ଉଦ୍ଧାର ନୋହିବ ॥
ଲଜ ଦେହକୁ ସହୁନାହିଁ । ନଖ କେଶ ରୋମ ଯା ଦେଖି ॥
ମାଳ ତିଳକ ଅଛି ନାହିଁ । ଡୋର କୌପୁନ ଏବା କାହିଁ ॥
ଲଜ୍ଜ ଦେହେ ନାହିଁ ଅଦର । ତାହାର ନାହିଁ ଅମ୍ବା ପର ॥
ପଙ୍କ ଚନ୍ଦନ ଦୁଇ ସମ । ତୃଣ ପଲଙ୍କ ମନୋହରମ ॥
ଲୋକଜନ ଉପବାସ ସହ । ନାମ ଅଧ୍ୟାନ ଏକାକର ॥
ପ୍ରେମ ତରଙ୍ଗେ ଭ୍ରମୁଥାନ୍ତି । ତେଣୁ ଚଞ୍ଚଳ ତାଙ୍କ ମତି ॥
ବୃନ୍ଦାବନଧାମୁ ପୁଷ୍କଣି । ଏବୁପେ ହୁଲୁ ଭକ୍ତବାନ ॥
ନାରଦକଣ୍ଡଙ୍କର ଅଗ୍ରତେ । ବୋଇଲେ ସେ ମୋର ଭକ୍ତତେ ॥

କୋଟି ବରଷେ ତାଙ୍କ କଥା । କେ କହି ପାରିବ ସର୍ବଥା ॥
ସେ ସର୍ବ ପ୍ରାଣୀ ହିତକର । ନାହିଁ ଅସୂୟା ଅହଂକାର ॥
ନିସ୍ପୃହା ଜଗତେନ୍ଦ୍ରଙ୍କୁ ଯାନ୍ତି । ତାହାଙ୍କୁ ବୋଲି ଭାଗବତ ॥
ଯେ ନିତ୍ୟ ଶତ୍ରୁ ମିତ୍ରଠାରେ । ସମାନ ବୁଦ୍ଧି ଧରୁରେ ॥
ଶୀତ ପତଙ୍ଗେ ତରୁଭୂଣ । ଜାଣଇ ସର୍ବ ନାରାୟଣ ॥
ଏ ସବମାର୍ଗ ବୋଲି କହି । ସାକ୍ଷାତ ଭକ୍ତି ଅଙ୍ଗ ସେହି ॥
ଏକାଶି ଭକ୍ତି ତାହାଠାରେ । ମାଳା ହୋଇ ଥାନ୍ତି ଗଳାରେ ॥
ଭୁକ୍ତି ମୁକ୍ତି ତାର ଅଗ୍ରେ । ସ୍ତୁତି କରନ୍ତି ନିରନ୍ତରେ ॥
ମୋର ବୈଷ୍ଣବଙ୍କ ସ୍ମରଣେ । ଶୁଦ୍ଧି ହୁଅନ୍ତି ବ୍ରହ୍ମାଗଣେ ॥
ଭକ୍ତଯା ସ୍ତୁତ ଗୁଢ଼ ଧନ । ଶୁଦ୍ଧକରେ ନିଜ ଜୀବନ ॥
ଅଶନ ଅଦର ଭୋଜନ । କର ଦଣ୍ଡବତ ଦର୍ଶନ ॥
ସମସ୍ତ ପାପୁଁ ତରଯାଇ । ଅନ୍ତେ ମୋ ଭୁବନେ ମିଳଇ ॥
ଥାଉ ତା ଦରଶନ ଗତି । ସ୍ମରଣେ ପାପ ବିନାଶନ୍ତି ॥
ସେ ସବୁ ଭକ୍ତର ଚରଣ । ବପ୍ର ଦଣ୍ଡାକାର ଶରଣ ॥
ତୁମ୍ଭ ଗମନ ଯେଉଁ ପଥେ । ସଙ୍ଗେ ସଙ୍ଗତ କରି ମୋତେ ॥

ଇତି ଶ୍ରୀ ଜଗନ୍ନାଥାମୃତେ ଶ୍ରୀ ଅଠବଡ଼ ଜଗନ୍ନାଥ
ଦାସ ଗୋସାଇଁ ଅନୁକ୍ରମଣି ନାମ
ଷୋଡ଼ଶୋଽଧ୍ୟାୟଃ ।



## ସପ୍ତଦଶ ଅଧ୍ୟାୟ ।

ଏବେ ଶ୍ରୀମୂର୍ତ୍ତିର ଚିହ୍ନ । କହିବା ଶୁଣ ସାଧୁଜନ ॥
ଶ୍ରୀ ଜଗନ୍ନାଥ ବୋଲି କହି । ଯେତେ ରୂପରେ ଭକ୍ତି ପାଇ ॥
ଅଦ୍ୟେ ଓଁକାର ଉଚ୍ଚାରଣ । ନମୋ ଶ୍ରୀ ଜଗନ୍ନାଥ ନାମ ॥
ଚତୁର୍ଦ୍ଧା ମୂରତି ଚରିତ । କହଇ ଶୁଣ ଏକଚିତ୍ତ ॥

ଚତୁର୍ଦ୍ଧା ମୂର୍ତ୍ତି ଯାହା କହ । ମନ୍ତ୍ରରେ ଚତୁର୍ଦ୍ଧାକ୍ଷ ସେହୁ ॥
ମଧ୍ୟରେ ଏ ଦଶ ଅକ୍ଷରେ । ଲକ୍ଷ୍ମୀ ପଞ୍ଚ କାମ ବୀଜରେ ॥
ଶ୍ରୀ ଜଗନ୍ନାଥ ବଳଦେବ । ସୁଭଦ୍ରା ସୁଦର୍ଶନ ଭବ ॥

ଶ୍ଲୋକଃ ।

ଜକାରଶ୍ଚ ଜଗନ୍ନାଥ ଗକାରଂ ବଳଦେବକଂ ।
ଭଦ୍ରା ନାକାରଶ୍ଚୈବ ଥକାରଶ୍ଚ ସୁଦର୍ଶନଂ ॥

ଜଅ ଅକ୍ଷର ଜଗନ୍ନାଥ । ଗଅ ବଳଦେବ ସଂସ୍ଥିତ ॥
ନାଅଟ୍ଟ ସୁଭଦ୍ରା ଅଟନ୍ତି । ଥଅ ସୁଦର୍ଶନ ମୂରତି ॥

ଶ୍ଲୋକଃ ।

ଜକାରେ କାମବୀଜଶ୍ଚ ଗକାରେ ଲକ୍ଷ୍ମୀ ଉଚ୍ୟତେ ।
ନାକାରଶ୍ଚ ପଞ୍ଚ ବୀଜଂ ଦଶାର୍ଣ୍ଣଶ୍ଚ ଥକାରକଃ ॥

ଜଅ କାମବୀଜ ଅକ୍ଷର । ଲକ୍ଷ୍ମୀବୀଜ ଗଅଟ୍ଟ ସାର ॥
ନାଅ ଅକ୍ଷର ପଞ୍ଚବୀଜ । ଦଶାର୍ଣ୍ଣ ଥକାରେଣ ତେଜ ॥
ଯାହାର ପୂର୍ବେ [illegible] ଥାଇ । ଜଗନ୍ନାଥ ବୋଲି ବୋଲଇ ॥
କାମରୂପରେ ନାମ ଯାର । ବ୍ରହ୍ମତେଜ ବ୍ରହ୍ମ ଅବତାର ॥
ପରମବ୍ରହ୍ମ ନିରାକାର । ଜଗନ୍ନାଥ ନାମ ଯାହାର ॥
ଶ୍ରୀଜଗନ୍ନାଥ ନାମ ଯହିଁ । ପଞ୍ଚ ପ୍ରକାରେ ଭକ୍ତି ଦେଇ ॥
ଶିଷ୍ୟଅକ୍ଷର ଶିଷ୍ୟ ଦ୍ୟନ୍ତି । ଶିଷ୍ୟଙ୍କର ସ୍ୱାମୀ ଅଟନ୍ତି ॥
ଶିଷ୍ୟକି ଅଙ୍ଗେ ଛନ୍ତି ବନ୍ଧୁ । ଶିଷ୍ୟ ଅକ୍ଷର ଛଥି ହୋଇ ॥
ଶିଷ୍ୟ କବନ୍ତ ଯାଙ୍କୁ ଛଟେ୍ୟ । ଶିଷ୍ୟଙ୍କି ଧରନ୍ତି ଗାଢେ ॥
ସ୍ନେହ କରନ୍ତି ପ୍ରାଣିଙ୍କର । ଆପଣେ ଶ୍ରୀମନ୍ତ ସୁନ୍ଦର ॥
ଚଉଦ ବ୍ରହ୍ମାଣ୍ଡେ ଜୀବ ଯେତେ । ସ୍ନେହ ଦାୟକ ସର୍ବଭୂତେ ॥
ଶିଷ୍ୟଙ୍କ ଶ୍ରୀମନ୍ତ ମହିମା । ଶିଷ୍ୟଙ୍କ ସର୍ବ ଗୁଣସୀମା ॥
ଯେ ଶିଷ୍ୟ ସେହୁଟି ଓଁକାର । ଶିଷ୍ୟରୁ ହେଉଛି ଅପାର ॥

ଶ୍ଳୋକଃ ।

ଶ୍ରୀ ସର୍ବ୍ୟସଂଜ୍ଞା ସାରଂ ଶ୍ରେୟ ପ୍ରେମ ରସାଧ୍ଵନ୍ଂ ।
ଶ୍ରୀଲକ୍ଷ୍ମୀ ଭଜତେ ଭତ୍ୟଂ ଶ୍ରୀକାର ଭକ୍ତିଦାୟକଂ ॥

ଶିଖଙ୍କ ଶାସ୍ତ୍ରଧ୍ୱ ଦେଖି । ଶିଖ ଯେ ପ୍ରେମ ରୂପ ହୋଇ ॥
ଶିଖ ଯେ ଲକ୍ଷ୍ମୀ ଠାକୁରାଣୀ । ଶିଖ ଭକ୍ତି ଦେବା କା[illegible] ॥
ଶ୍ରୀମନ୍ତ୍ର ପଦ ଅଛି ଯହିଁ । ଶିଖ ବୋଲି ଜାଣିମ ତହିଁ ॥
ଅଦ୍ୟରେ ଶିଖ ବୋଲି କହ । ଶିଖ ନ ଥିଲେ କ୍ରୀଷା ନୋହ ॥
ଶିଖରୁ ହୋଇଛି ବଚନ । ଶିଖ ନ ଥିଲେ ନୋହେ କର୍ମ ॥
ଶିଖରୁ ସ୍ବରବେଦ ଜାତ । ଶିଖରୁ ଶାସ୍ତ୍ର ଯେ ସମୁତ ॥
ବେଦ ବଚନେ କର୍ମ ଯେତେ । ଶିଖରୁ ଜାତ ଏ ସମସ୍ତେ ॥
ଏମନ୍ତ ଶିଖର ଚରିତ । ଜଅ ଅକ୍ଷର ଶୁଣ ସନ୍ତ ॥

ଶ୍ଳୋକଃ ।

ଯତଃ ସର୍ବାଣି ଭୂତାନି ଭବତ୍ୟାଦ୍ୟ ଯୁଗାଗମେ ।
ଯସ୍ମିଂଶ୍ଚ ପ୍ରଳୟଂ ଯାନ୍ତି ପୁନରେବ ଯୁଗକ୍ଷୟେ ॥

ଯେତେ ଏ ସଂସାର ମଧ୍ୟରେ । ଜୀବ ଜନ୍ମନ୍ତି ସେ ଅଦ୍ୟରେ ॥
ଜଅ ଅକ୍ଷରୁ ଜନ୍ମ ହୋନ୍ତି । ଜଗତ ଅନନ୍ଦେ ପାଳନ୍ତି ॥
ପୁଣି ସେ ଯୁଗଅନ୍ତାକାଳେ । ସକଳ ଜୀବ ଏକମେଳେ ॥
ପ୍ରଳୟ ସହ ନ ପାରନ୍ତି । ଜଅ ଅକ୍ଷରେ ଲୀନ ହୋନ୍ତି ॥
ଜଅ ଅକ୍ଷରୁ ସର୍ବ ଜାତ । ଜଅରୁ ଦେବତା ସମୁତ ॥
ସାଂଖ୍ୟ ଯୋଗାଦ୍ଧ ତପ ଯେତେକି । ଦାନବ ମାନବ ସହିତେ ॥
ଯେତେକ ବସ୍ତୁ ଅବତାର । ଜଅ ଅକ୍ଷରୁ ଏ ବାହାର ॥
ଜଅରୁ ଯୋଗ ହୋଏ ଜାତ । ଜଅକ୍ଷରୁ ଜ୍ଞାନ ସମୁତ ॥
ସାଂଖ୍ୟ ଯୋଗାଦ୍ଧ ତପଯେତେ । ଯୋଗିଏ ସାଧନ୍ତି ଜଗତେ ॥
ଯେତେକ ବଦ୍ୟା ଅଛି ମହୀ । ଶିଳ୍ପାଦ୍ଧ ଯେତେ ଧର୍ମହୋଇ ॥
ଯଜ୍ଞ ଜପାଦ୍ଧ ସର୍ବବ୍ରତ । ଯେରୂପେ ଯେଣ୍ଟବେ ଉନ୍ତନ୍ତି ॥

ଜୀବ ସମ୍ପୃହ ଜ୍ୟୋତି ଧ୍ୟାନ । ଜଅରୁ ହୋଇଛି ଜନମ ॥
ଜଅରୁ ଜଗନ୍ନାଥ ମୂର୍ତ୍ତି । ଅଟେ ନିର୍ମାଣ ହୋଇଛନ୍ତି ॥
ଯମ ନିୟମ ଏ ସାଧନ । ଜଅରୁ ହୋଇଅଛି ଜନ୍ମ ॥
ଜପ ଦୃଢ଼ ଭକ୍ତି ଜୀବନ । ସତେ ମତିଙ୍କ ଦୃଢ଼ ମନ ॥
ଯଥ ପୀରୁଷ ଦିବ୍ୟଗୁଣ । ଯେ ଧର୍ମ ମାର୍ଗ ଆଚରଣ ॥
ଜଅରେ ହରିନାମ ବନ୍ଧ । ଜଅ ହୃଙ୍ଗୁଳା ବର୍ଣ୍ଣିହୋଇ ॥
ଜଅରୁ ଭକ୍ତି ଯୋଗମାନ । ପ୍ରେମ ଭକତି ହୋଏ ଜନ୍ମ ॥
ଶ୍ରୀରାଧାକୃଷ୍ଣ ପାଦଯୁଗେ । ଜଅ ହବନ୍ତେ ଭକ୍ତି ଲଗେ ॥

ଶ୍ଳୋକଃ ।

ଯଜ୍ଞୋ ଯଜ୍ଞପତିର୍ଯଜ୍ୱା ଯଜ୍ଞାଙ୍ଗୋ ଯଜ୍ଞ ବାହନଃ ।
ଯଜ୍ଞାନ୍ତକୃଦ୍ୟଜ୍ଞଗୁହ୍ୟ ମନ୍ନମନ୍ନାଦ ଏବଚ ॥

ଜଅଟି ଯଜ୍ଞରୂପୀ ହୋଇ । ଯଜ୍ଞେ ଯଜ୍ୱତେ ଅଟଇ ॥
ଜଅ ଯଜ୍ଞ ଅଙ୍ଗ ଅଟଇ । ଯଜ୍ଞରେ ଅବାହନ ହୋଇ ॥
ଯଜ୍ଞକୁ ନାଶକରେ ଜାହିଁ । ଜାହିଁ ଯଜ୍ଞେ ଗୁପତେ ରହି ॥
ଯଜ୍ଞହୋଏ ଭୁଜ ଦ୍ରବ୍ୟର । ଜେ ଜ୍ଞାନ ଜେ ହୋଏ ହୋମର ॥
ଜ୍ଞାନ ଜ୍ଞାନେ ହୋମ କରଇ । ଫଳାଦେ ହୋମେ ଜେ ତୋଷଇ
ଏବେ ଗଅ ଅକ୍ଷରର ଗତି । କହୁବା ଶୁଣ ସାଧୁମତ ॥

ଶ୍ଳୋକଃ ।

ସୁଦେବ୍ୟା ଗଭୀରସ୍ତେ ଗହନୋ ଗୁପ୍ତଶ୍ଚକ୍ର ଗଦାଧରଃ ।
ଗୋହତେ ଗୋପତି ର୍ଗୋପ୍ତା ବୃଷଭାକ୍ଷ୍ୟା ବୃଷପ୍ରିୟଃ ॥

ଗଅଟି ଗୁହ୍ୟ ଗୁରୁତର । ଗଭୀର ଯେମନ୍ତ ସାଗର ॥
ଅଟେ ଗହନ ଗ୍ରବ ଯେହୁ । ଗଅ ଅକ୍ଷରୁ ଜାତହୋଇ ॥
ଅଟେ ଗୁପତ ମର୍ମ ଯେତେ । ଗଅରୁ ଜନମ ସମସ୍ତେ ॥
ଗଅରୁ ଜାତ ସୁଦର୍ଶନ । ଗଦା କୌମୁଦୀ ଶଙ୍ଖ ବାଣ ॥
ଗୋଓ ଗବଦ ପୃଥ୍ୱୀ ହୋଇ । ଗଅ ପୃଥ୍ୱୀ ହତ କରଇ ॥

ଯୋଗଚି ପୃଥ୍ୱୀର ଈଶ୍ୱର । ଉଅରୁ ବୃଷଭ ବାହାର ॥
ଗଅରୁ ଗୋଲୋକ ଦେହ'ଇଛି । ବୃଷପ୍ରିୟ ବୃନ୍ଦ ଅଟନ୍ତି ॥
ଗଅଷ୍ଟ ଦେବ କଳେବର । ଗଅରୁ ଜ୍ଞାନ ଏ ସଂସାର ॥
ଗୁପତ ଦ୍ରବ୍ୟ ଯେତେ ମଣି । ଗଅନ୍ତୁ ଲକ୍ଷ୍ମୀ ଜଳ ହୋଇ ॥
ଗଅନ୍ତି ସ୍ୱନାମ ଜାଣ । ନଙ୍କାର ଖାପୁଣୀ ମନ୍ତ୍ରେଣ ॥
ଗଅ ଗଙ୍ଗ ଗଞ୍ଜନ ହୋଇ । ଗଅରୁ ଘୋଟାନ୍ତ୍ୟାଦ ଦେଖି ॥
ଭଙ୍ଗାଦ ସର୍ବଂଘର୍ଥ ଯେତେ । ଗଅରୁ ଜନମ ନମସ୍ତେ ॥

ଶ୍ଳୋକଃ ।

ଗୁଣଙ୍କଂ ଗୁପ୍ତ ଜ୍ଞାନସ୍ଥ ଗଭୀରଂ ପ୍ରେମ ସାଗରଂ ।
ସଧାକୃଷ୍ଣ ପଦଂ ଭକ୍ତ୍ୟା ଗଜାବେ ସଂସୃତେ ସଦା ॥

ଗରୁଣ ଗୁପତ ଅଟଇ । ପ୍ରେମ ସମୁଦ୍ର ଗଅ ହୋଇ ॥
ରାଧା କୃଷ୍ଣରେ ପ୍ରେମଭକ୍ତି । ଗଅ ବୋଲନ୍ତେ ଭକ୍ତି ପାନ୍ତି ॥
ଗୁଣ ଗଣନା ଗୁଣିବାର । ତେଲ୍ଲ କାରମା ଗର୍ଭପାର ॥
ଶିବ ଗନ୍ଧର ଗୁହ୍ୟ ବୃତ୍ତି । ଗଅଂଷରୁ ଜାତ ଗାନ୍ଧ ॥
ଏବେ ଯେ ଗଅକ୍ଷର ଯାଇ । ନାଥ ଅକ୍ଷର ଭକ୍ତି କହୁ ॥
ଉସ୍ମନ୍ତ୍ର ନିର୍ମଳ ଭକ୍ତି । ନାଥ ଅକ୍ଷରୁ ଜାତହୋନ୍ତି ॥

ଶ୍ଳୋକଃ ।

ଚିଦଂ ସଙ୍କଳ୍ପଂ ନିର୍ମଳଂ ନିର୍ବିକଳ୍ପଂ
ଉଗ୍ରହଂ ନକାର ମୌକାର ଗମ୍ୟଂ ।
ଗୁଣାତୀତ ମବ୍ୟକ୍ତ ମେକଂ ତୁ ଚନ୍ତ୍ୟଂ
ପରଂ ବ୍ରହ୍ମଙ୍କଂ ବେଦ ତସ୍ମୈ ନମସ୍ତେ ॥

ସଚ୍ଚିଦାନନ୍ଦ ବ୍ରହ୍ମ ଏହୁ । ନିର୍ମଳ ନିର୍ବିକଳ୍ପେ ରହୁ ॥
ଉକାର ଓଁ କାର ଗମ୍ୟ । ଗୁଣେ ଶ୍ରେଷ୍ଠ ଅବ୍ୟକ୍ତ ବ୍ରହ୍ମ ॥
ତୁରୀୟ ଚତୁର୍ଥ ଭବରେ । ଦୂରଣ ଛନ୍ତ୍ର ପର୍ଚ୍ଚଠାରେ ॥
ସେ ପରଂବ୍ରହ୍ମ ଯେ ଈଶ୍ୱର । ତାହାଙ୍କୁ ମୋର ନମସ୍କାର ॥

ନିର୍ଦ୍ଧି ନିସ୍ତମ୍ଭ ସ୍ଥାନ । ନୃସିଂହ ଅଛି ଦେବ ଜାଣ ॥
ନରହ ତାରଣ ସେ ବାଣୀ । ଜଗ ବନ୍ଦନ୍ତି ଯେତେ ପୁଣି ॥
ଛତ୍ୟ ମହାଛତ୍ୟଷ୍ଟି ଯେତେ । ନାଶ ହୋଇଲା ଦ୍ରବ୍ୟମତେ ॥
ନଗାନ କଶୋଷ ଜଶୋର । ନୂଅଙ୍କର ପ୍ରେମସାଗର ॥
ସାବିତ୍ରୀ ନାରାୟଣ ମନ୍ତ୍ର । ଦଶାକ୍ଷର ଯେ ମହାମନ୍ତ୍ର ॥
ଦ୍ୱିତୀୟ ହରିନାମ ଏହି । ନାଅ ଅକ୍ଷରୁ ଜାତ ହୋଇ ॥
ନୟନେ ଦେଖିବା ଯେତେକ । ନାମ ଅଛଇ ତ୍ରୈଲୋକ୍ୟ ॥
ନାଅରେ ସୁଭଦ୍ରାଙ୍କ ସ୍ଥିତ । ନାଅରୁ ବ୍ରହ୍ମ ଏ ଜଗତ ॥

ଶ୍ଳୋକଃ ।

ନିରାମୟଂ ନିରାକାରଂ ନିର୍ବିକଳ୍ପଂ ନିରଞ୍ଜନଂ ।
ନାକାରେ ବଦତେ ଭକ୍ତିଃ ରାଧାକୃଷ୍ଣ ପଦାମ୍ବୁଜ ॥

ନିର୍ମଳ ଭକ୍ତି ହୁଏ ଯେତେ । ନିର୍ମାଲ୍ୟ ପଦାଦ ସହିତେ ॥
ଯହିଁରେ ଦେହ ବୁଦ୍ଧି ନାହିଁ । ତାହାକୁ ନିରାକାର କହି ॥
କଳ୍ପନା ମଧ୍ୟେ ଯେହୁ ନାହିଁ । ନିର୍ବିକଳ୍ପ ବୋଲି କହି ॥
ଏମନ୍ତେ ଯେଉଁ ଗୁଣମାନ । ନାଅ ଅକ୍ଷରୁ ସେହୁ ଜାଣ ॥
ଲେଖା ଶୁଣା କହିବା ମାହେ । ଘଟଣ ନୋହେ ଯେବା ଗାହେ ॥
ନିରଞ୍ଜନ ନାମ ବୋଲାଇ । ନାଅ ଅକ୍ଷରୁ ଜନ୍ମ ସେହି ॥
ରାଧାକୃଷ୍ଣ ଚରଣେ ଯାଇ । ନାଅ ଭଜିଲେ ଭକ୍ତି ପାଇ ॥
ଏବେ ଯେ ଓକାରର ସ୍ଥିତ । ଭେଦାଇ କହିବା ବୃତ୍ତାନ୍ତ ॥

ଶ୍ଳୋକଃ ।

ଓକାରଃ ସର୍ବ ଜୀବସ୍ୟ ସ୍ଥିତ୍ୱା ଯତ୍ର ପୁରୁଷୋତ୍ତମେ ।
ସର୍ବ ଭୂତମୟଂ ବ୍ରହ୍ମ ଓକାରେ ଯତ୍ର ଜୀବସ୍ୟେହ ॥

ଓକାର ସର୍ବଜୀବେ ସ୍ଥିତ । ପୁରୁଷୋତ୍ତମର ଯେ ଗତ ॥
ସର୍ବଭୂତରେ ଯେବା ଆତ୍ମା । ଓକାର ହୋଇ ସେ ବ୍ରହ୍ମା ॥
ଓଅରୁ ଜୀବ ସୃଜନେ । ଓଅରୁ ସ୍ଥିର ବୁଦ୍ଧି ମନ ॥

ପତଙ୍ଗ ଯେବା ଅବହୋଇ । ସ୍ଥିତ ଦ୍ରବ୍ୟ ଯେବା ଅଛଇ ॥
ଏଥିରୁ ସର୍ବ ମୁନିବର । ତପ ସାଧନ୍ତି ନିରନ୍ତର ॥
ଏଥି ଯେ ଅଷ୍ଟାଙ୍ଗର ଯୋଗ । ଅଷ୍ଟାଦଶ ବିଦ୍ୟା ସମ୍ଭୋଗ ॥
ଧର୍ମ ଅର୍ଥ ଯେ କାମ ମୋକ୍ଷ । ଏଥିରୁ ଜନମ ପ୍ରତ୍ୟକ୍ଷ ॥
ଇନ୍ଦ୍ର କୁବେର ନଇରୁତ । ଏମାନେ ଏଥିରୁ ସଂଜାତ ॥
ବଇଶ୍ୟ ଶୂଦ୍ର ଯେବା ଜାତି । ଏଥି ଅକ୍ଷରୁ ହୋଇଛନ୍ତି ॥
ଜଳ ଅନଳ ବସୁମତୀ । ଯେତେକ କର୍ଣ୍ଣରେ ଶୁଣନ୍ତି ॥
ତିନି ଗାଇ ଯେ କୃଷ୍ଣନାମ । ସବୁଙ୍କ ମଧ୍ୟ ପ୍ରମାଣ ॥
ସଂସାରେ ଶ୍ରେଷ୍ଠବେଦ ଯେତେ । ଶ୍ରେଷ୍ଠତୀର୍ଥ ଅବା ସୁବ୍ରତେ ॥
ଧାତାଦି ଶ୍ରେଷ୍ଠ ଯେବା ହୋଇ । ଯେ ଶ୍ରେଷ୍ଠ ଅନ୍ୟରେ ଅଛଇ ॥
ଏଥିଟି ଅନାଥର ନାଥ । ଏଥିଟି ସର୍ବ ପ୍ରାଣୀହିତ ॥
ସମ୍ମୋହ ମୋହନ ମନ୍ତ୍ରର । ସଂହାରେ ପଡ଼ି କେହି ନର ॥
ସ୍ତ୍ରିୟ ବା ପୁରୁଷ କି ହେଉ । ଅବଶ୍ୟ ବଶ ହୁଏ ସେହୁ ॥
ତେମନ୍ତେ କଳାର ବୋଲନ୍ତେ । ସ୍ୱଧାକୃଷ୍ଣ ବଶ ହୁଅନ୍ତେ ॥
ପଦାରବିନ୍ଦ ଭକ୍ତି ହୋଇ । ଅନ୍ତେ ସେହୁଠାରେ ସେବଇ ॥
ଭଣଇ ବସ୍ତ୍ର ଦବାକର । ଜଗନ୍ନାଥ ନାମ ତତ୍ତ୍ୱର ॥
ସୁଜନେ ବୋଲ ଜଗନ୍ନାଥ । ଭକ୍ତି ଲଭିବଟି ଭୂରତ ॥

ଇତି ଶ୍ରୀ ଜଗନ୍ନାଥାମୃତେ ଶ୍ରୀ ଅତିବଡ଼ ଜଗନ୍ନାଥ ଦାସ ଅନୁକ୍ରମଣି
ନାମ ସପ୍ତଦଶୋଽଧ୍ୟାୟଃ ।



# ଅଷ୍ଟାଦଶ ଅଧ୍ୟାୟ ।

ଶ୍ରୀ ମୂର୍ତ୍ତି ଶ୍ରୀଅଙ୍ଗ ତତ୍ତ୍ୱର । କହିବା ଶୁଣ ସାଧୁନର ॥

ଶ୍ଲୋକଃ ।

ଜଗନ୍ନାଥ ସ୍ତବଂ ନାମ କୀର୍ତ୍ତୟିଷ୍ୟନ୍ତି ଯେ ନରାଃ ।
ଅପରାଧ ଶତଂ ତେଷାଂ କ୍ଷମନ୍ତେ ନାତ୍ର ସଂଶୟଃ ॥

ଯେ ବାରେ ଜଗନ୍ନାଥ ବୋଲେ । ତାର ଅପରାଧ ସମୂଳେ ॥
ବେଳେ ବୋଲନ୍ତେ କ୍ଷୟ ଯାଇ । ଏହାର ସଂଖ୍ୟା କହିନାହିଁ ॥
ଯେ ନିତ୍ୟ ପୁରୁଷୋତ୍ତମରେ । ସ୍ୱଧାକୃଷ୍ଣ ଏକାତ୍ମବରେ ॥
ସେ ଯେ ନିର୍ଗୁଣ ନିରାକାର । ପ୍ରତିମା ରୂପରେ ବିହାର ॥
ଛାଡ଼ିଲେ ନିଃଶ୍ୱାସ କୋଟିଏ । ଜନ୍ମନ୍ତି ବ୍ରହ୍ମାଣ୍ଡ କୋଟିଏ ॥
ପୁଣି ନିଃଶ୍ୱାସ ସଂହରନ୍ତେ । ପ୍ରଳୟ ହୋଏ ଏହିମତେ ॥
ହୋଇଣ ଯାନ୍ତି କୋଟି ସୃଷ୍ଟି । ବ୍ରହ୍ମା କୋଟିଏ ଶିବ କୋଟି ॥
କୋଟିଏ ଲୋକ ଲୋକପାଳ । କୋଟି ସମୁଦ୍ର ଖମଣ୍ଡଳ ॥
କୋଟିଏ ବିଷ୍ଣୁ ଅବତାର । ହୁଅନ୍ତି ନିଃଶ୍ୱାସ ମଧ୍ୟର ॥
ଶ୍ରୀ ଜଗନ୍ନାଥଙ୍କ ମୂରତି । ଯେଉଁ କଳାରୁ ଉତପତ୍ତି ॥
ସେ ଗୋବିନ୍ଦ ଆଦି ପୁରୁଷ । ପୁରୁଷୋତ୍ତମେ ଦାରୁବେଶ ॥
ଅଗ୍ନିରୁ ଅଗ୍ନି ହୋଏ ଜାତ । ମନୁଷ୍ୟୁ ମନୁଷ୍ୟ ସମ୍ଭୂତ ॥
ତେଣୁ ବ୍ରହ୍ମରୁ ବ୍ରହ୍ମମାନ । ଜଗନ୍ନାଥରୁ ହେଲେ ଜନ୍ମ ॥
ଏହିଟି ବ୍ରହ୍ମ ଜାତ କଲେ । ପ୍ରଜାପତିଙ୍କି ଏ ସ୍ଥାପିଲେ ॥
ସର୍ବଭୂତ ସ୍ଥାପିଲେ ନସନ୍ତ । ସର୍ବ ବ୍ରହ୍ମାଣ୍ଡ ଏଥି ହୋଇ ॥
ଅବ୍ୟକ୍ତ ବ୍ରହ୍ମ ନିରାକାର । ଶ୍ରୀ ଜଗନ୍ନାଥ ନାମ ସାର ॥
ସେ ବ୍ରହ୍ମା ବିଷ୍ଣୁ ମହେଶ୍ୱର । କଲ୍ପିଲେ ହୃଦୟ ମଧ୍ୟର ॥
ମତ୍ସ୍ୟ କୂର୍ମ ବରାହ ମୂର୍ତ୍ତି । ଏତେକ ଜନ୍ମିଲେ ବଇଠି ॥
ନୃସିଂହ ବାମନ ଯେ ଦୁଇ । ଦକ୍ଷସ୍କନ୍ଧୁ ହୁରଇ ॥
ବାମଭୁଜ ମୂଳରୁ ଜାତ । ରାମ ହର କଳ୍କି ସହିତ ॥
ବଉଦ୍ଧ ମୂରତି ମିଶାଇ । ଦକ୍ଷିଣ ଭୁଜୁଁ ଜନ୍ମ ଏହି ॥
ଶିରରୁ ଜନମ ଅନନ୍ତ । ବ୍ରହ୍ମାଣ୍ଡ କଳ୍ପନାରୁ ଜାତ ॥
ଏ ଅଥର୍ବ ବେଦବଚନ । ପୂର୍ବରୁ ଏହାର ପ୍ରମାଣ ॥
ଯେହ୍ନେ ଟୋଲୋକ ନିତ୍ୟସ୍ଥଳ । ସେ ଅଟେ ଶିରୁ ନୀଳାଚଳ ॥
କୋଟିଏ ଯୁଗ ଯେବେ ଯାଇ । ଏଥିରୁ ଲୀଳା ନ ତୁଟଇ ॥

ଏ ଜଗନ୍ନାଥ ଷୋଳକଳା । ଏଥିଁ କଳାଏ ନନ୍ଦବଳା ॥
କଳାକ ଷୋଳକଳା ହୋଇ । ସେଇ ଜନ୍ମିଲେ ଗୋପେ ଯାଇ ॥
ମହାପ୍ରତାପ କର୍ମ କଲେ । ଅଶେଷ ମହିମା ସ୍ଥାପିଲେ ॥
ଯେବଣ ସ୍ୱଧା ସଙ୍ଗେ ଜନ୍ମ । ଲୀଳା ଜଗନ୍ନାଥେ କରନ୍ତ ॥
ସେ ସ୍ୱଧାଙ୍କର କଳା ସେହି । ହେଲେ ବୃଷଭାନୁ ନନ୍ଦଣ ॥

ଶ୍ଳୋକଃ ।

ସ୍ୱଧାକଳା ରାଧିକାଖ୍ୟା ବ୍ରଜଲୋକାନୁସାରିଣୀ ।
ବୃଷଭାନୁସୁତା ଜନୀ ନନ୍ଦନନ୍ଦନମୋହିନୀ ॥

ଏହି ସ୍ୱଧିକା କଳା ଏକ । ରାଧିକା ଜାତ ବ୍ରଜଲୋକ ॥
ବୃଷଭାନୁଙ୍କ ସୁତା ହେଲେ । ନନ୍ଦନନ୍ଦନଙ୍କୁ ମୋହିଲେ ॥
ଏଠାରୁ ହୋଇ ଅବତାର । ଭାଳେ ବଶୀମ ଏହି ପୁର ॥
ଜେ ପୁଣ ଅବତାର ହୋଇ । ପୃଥ୍ୱୀ ତାରନ୍ତି ଗୁଣ ଗାଇ ॥
ନେକନାମ ଅବତାର ହୋଇ । ଅସୁର ମାରିବାର ପାଇଁ ॥
ଏ ଦେବଦେବର ବ୍ରହ୍ମମୂର୍ତ୍ତି । ଏଥି ଅନେକ ବ୍ରହ୍ମ ହୋନ୍ତି ॥
ମୁଖରୁ ବ୍ରାହ୍ମଣ ସମ୍ଭୂତ । କ୍ଷତ୍ରିୟ ବାହୁମୂଳୁଁ ଜାତ ॥
ଉରୁରୁ ବୈଶ୍ୟ ଜାତ ହୋଇ । ଶୂଦ୍ର ଯେ ପାଦରୁ ଜନ୍ମଇ ॥
ଏ ଅର୍ଥ ସକଳ ପର୍ଯ୍ୟନ୍ତେ । ସମସ୍ତ ଅଛି ବେଦବାକ୍ୟେ ॥
ଚନ୍ଦ୍ରମା ମନରୁ ସଂଜାତ । ଚକ୍ଷୁରୁ ସୂର୍ଯ୍ୟଙ୍କ ସମ୍ଭୂତ ॥
କର୍ଣ୍ଣରୁ ପବନ ଜନ୍ମନ୍ତି । ଅଗ୍ନି ମୁଖରୁ ଉତପତ୍ତି ॥
ଚରଣୁଁ ଜାତ ବସୁନ୍ଧରା । ଇନ୍ଦ୍ର ଭୁଜରୁ ଅବତର ॥
ବୃଷଣ ଦେଶୁଁ ପ୍ରଜାପତି । ଶାର୍ଦ୍ଦ୍ୟରୁ କାମଦେବ [illegible] ॥
ଲୋମୁଁ ଔଷଧି ତରୁଗଣ । ଜାନୁରୁ ଜାତ ଚିରମା[illegible] ॥
ଆକାଶ ନାଭିରୁ ଜନ୍ମଇ । ବରୁଣ ଉଦରୁ ସ୍ୱଅଇ ॥
ଧର୍ମ ଦକ୍ଷିଣ ସ୍ତନୁ ଜାତ । ଅଧର୍ମ ପୃଷ୍ଠରୁ ସମ୍ଭୂତ ॥

କୃଷିରୁ ଯେ ଯାତ ଯାତେ । ପୂଣ୍ୟ ହୃଦସ୍ଥ ନଥ୍ୟସାର ॥
ଅଳଙ୍କାର ନଷ୍ଟ ଗଣି । ବେଦ ଅମୃତ ଯା ବଚନ ॥
ଆନନ୍ଦ ହାସ୍ୟରୁ ଜନ୍ମଇ । ମୁକୁଟ ଅଙ୍ଗୁ ଜାତ ହୋଇ ॥
ଭକ୍ତି ସେବାରୁ ହୋଏ ଜାତ । ଲକ୍ଷ୍ମୀ ବାମ ପ୍ରକୁଣେ ସ୍ଥିତ ॥
ଭାଗ୍ୟରୁ ବାକ୍ୟ ଦେଖା ହୋଇ । କଟାକ୍ଷ କୁବେର ଜନ୍ମଇ ॥
ପାଦପଦ୍ମରେ ମଧୁ ସ୍ଥିତ । ସେ ମଧୁ ଅଟଇ ଅମୃତ ॥
ଗଙ୍ଗା ଯେ ଚରଣୁ ବାହାର । କ୍ରୋଧରୁ ଜାତ ଦାଶରର ॥
ଶ୍ରୀ ମୂର୍ତ୍ତି ମଧ୍ୟେ ରାଧାକୃଷ୍ଣ । ବିହାର କରୁଛନ୍ତି ତୁଷ୍ଟ ॥
ତାଙ୍କର ଯେ ସ୍ଥିର ଚରଣ । ବନ୍ଦିବା ତହିଁ ଯେତେ ଚିହ୍ନ ॥
କୃଷ୍ଣ ଦକ୍ଷିଣ ପାଦଗତ । ଜ୍ୟେଷ୍ଠ ଅଙ୍ଗୁଳେ ଚକ୍ର ସ୍ଥିତ ॥
ଲୋଭମୋହ ଯେ କାମ କ୍ରୋଧ । ମଦ ମାତ୍ସର୍ଯ୍ୟ ଷଡ଼ବର୍ଗ ॥
ଏ ଯେ ଭକ୍ତର ଷଡ଼ବୈରି । ସେ ଚକ୍ର ଚିହ୍ନ ତା ନିବାର ॥
ପାଦ ମଧ୍ୟେ ଧ୍ୱଜ ସୁନ୍ଦର । ଭକ୍ତ ହୃଦ ଆନନ୍ଦ ସର ॥
ପଦ୍ମ ମଧ୍ୟ ଅଙ୍ଗୁଷ୍ଠି ମୂଳ । ଭକ୍ତ ହୃଦ କରେ ନିର୍ମଳ ॥
ବଜ୍ର କନିଷ୍ଠ ଅଙ୍ଗୁଷ୍ଠରେ । ଭକ୍ତ ପାପ ନାଶ କରେ ॥
ପାଦମୂଳେ ଅଙ୍କୁଶ ଚିହ୍ନ । ଭକ୍ତର ଭ୍ରମ ବିନାଶନ ॥
ଯବ ଅଙ୍ଗୁଷ୍ଠି ମୂଳେ ଚିହ୍ନ । ଭକ୍ତେ ଅନନ୍ଦେ ଭୋଗଦେଇ ॥
ଅଙ୍କୁଶ ସ୍ୱସ୍ତିକ ଏ ଦୁଇ । ଭକ୍ତ ହୃଦ ଦାର୍ଢ୍ୟ କରଇ ॥
ଊର୍ଦ୍ଧ୍ୱରେଖା ଅଙ୍ଗୁଷ୍ଠି ମୂଳେ । ଭକ୍ତଙ୍କୁ ଭକ୍ତି ଦେଇ ବଳେ ॥
ଗଦା ଅଷ୍ଟକୋଣ ଏ ଦୁଇ । ଭକ୍ତ ଭ୍ରମ ନାଶନ୍ତି ଏହି ॥
ବାମ ଚରଣମଧ୍ୟେ ମୀନ । ଭକ୍ତଙ୍କ ଯାହା ଏହି ଚିହ୍ନ ॥
ପାଦମଧ୍ୟେ ପୂର୍ଣ୍ଣ କୁମ୍ଭ । ଭକ୍ତଙ୍କୁ କୃପାରେ ରଖନ୍ତି ॥
ଅମ୍ବର ପାଦ ଦକ୍ଷିଣରେ । ଭକ୍ତ କାମନା ପୂର୍ଣ୍ଣ କରଇ ॥
ସେ ପାଖେ ଅର୍ଦ୍ଧଚନ୍ଦ୍ର ଶୋଭ । ଭକ୍ତ ଭୁଞ୍ଜନ୍ତି ସୁଧା ତହିଁ ॥
ଅଗଳ ମଧ୍ୟେ କୂପ ଲଗ୍ନ । ଭକ୍ତଙ୍କ ଦୁଷ୍ଟ ନିବାରଣ ॥

ଅଙ୍ଗୁଳି ମୂଳେ ଶଙ୍ଖ ଚିହ୍ନ । ଭକ୍ତଙ୍କୁ ସର୍ବ ବିଦ୍ୟା ଦେଇ ॥
ଅର ଅଙ୍ଗୁଳରେ ଗୋଷ୍ପଦ । ଭକ୍ତଙ୍କୁ ଦିଏ ଅଇଶ୍ୱର୍ଯ୍ୟ ॥
ବନ୍ଧୁ କନିଷ୍ଠାଙ୍ଗୁଷ୍ଠି ମୂଳେ । ଦିବ୍ୟ ଅକାଶ ଜ୍ୟୋତି ସ୍ଥଳେ ॥
ପାଦ ମଧ୍ୟ ତ୍ରିକୋଣ ଯୋନି । ଭକ୍ତେ ସର୍ବ ସିଦ୍ଧି ଦେଇ ॥
ଏରୂପେ ଅଷ୍ଟାଦଶ ଚିହ୍ନ । ଯୋଡ଼ି ଥାଏ ବେନି ଚରଣ ॥
ଭକ୍ତଙ୍କ ଦୁଃଖ ନାଶନ୍ତି । ସେ ଚିହ୍ନ ସର୍ବ ସୁଖ ଦିଅନ୍ତି ॥
ଠାକୁରାଣୀଙ୍କ ପାଦଚିହ୍ନ । କହିବା ଶୁଣ ସାଧୁଜନ ॥
ଠାକୁରାଣୀଙ୍କ ଦକ୍ଷପାଦ । ଏତେ ଚିହ୍ନ ତହିଁ ବିଜନ ॥
ରଙ୍ଗ ପଦ୍ମ ରଙ୍ଗ ଉତ୍ପଳ । ରଥ ହସ୍ତୀ ଧ୍ୱଜ କୁଣ୍ଡଳ ॥
ବାମ ପାଦରେ ପୁଷ୍ପମାଳ । ଛତ୍ର ଚନ୍ଦ୍ର ଦଣ୍ଡ ଚଞ୍ଚଳ ॥
ମୁକୁଟ ଚନ୍ଦ୍ର ପୂର୍ଣ୍ଣ ହୁଲେ । ଭକ୍ତି ମନ୍ତ୍ର ଯେତେ ସଂସାରେ ॥
ଏହେ ଦ୍ୱାଦଶ ଚିହ୍ନ ହୋଇ । ଭକ୍ତଙ୍କୁ ଭକ୍ତି ଦେବାପାଇଁ ॥
ଭକ୍ତର ଅକର୍ମ ଛଡ଼ାନ୍ତି । କପାଳେ ସୁକର୍ମ ଲେଖନ୍ତି ॥
ଏ ପାଦ ଯେ ଆଶା କରଇ । ଅକ୍ଷୟ ସୁଖ ସେ ଲଭଇ ॥
ଏ ଗୁରୁ ଚରଣେ ବିଶ୍ୱାସ । ଶରଣ ଦିବାକର ଦାସ ॥
ଇଚ୍ଛି ଅଦ୍ୱୈତ ଗୋସାଇଁ । ଏହୁ ସୁଖ ବାଞ୍ଛନ୍ତି ଭଦ୍ର ॥

ଇତି ଶ୍ରୀ ଜଗନ୍ନାଥାମୃତେ ଶ୍ରୀ ଅଦ୍ୱୈତ ଜଗନ୍ନାଥ
ଦାସ ଗୋସାଇଁ ଅନୁକ୍ରମଣି ନାମ ଅଷ୍ଟାଦଶୋଧ୍ୟାୟଃ ।

---

## ଊନବିଂଶ ଅଧ୍ୟାୟ ।

ଶ୍ଳୋକଃ ।

ପ୍ରେମାଦୌ କୃପା ଦୃଷ୍ଟିଃ କୃତାର୍ଥ କୃତଭୂତଳେ ।
ସର୍ବବାଞ୍ଛା କଳ୍ପତରୋଃ ଶ୍ରୀ ଗୁରୁଃ ପୁରୁଷୋତ୍ତମଃ ॥

ସୁଜନେ ଶୁଣ ସାବଧାନ । କହିବା ବୈଷ୍ଣବ ବିଧାନ ॥
ଶ୍ରୀଗୁରୁଠାରୁ ଉପଦେଶ । କହଣି ହରିନାମ ଘୋଷ ॥

ସବ ମାର୍ଗରେ ଯେଉଁ ଥିବ । ଏକାନ୍ତେ କୃଷ୍ଣଙ୍କୁ ଭଜିବ ॥
ତାହାର ନିତ୍ୟ କର୍ମ ନାହିଁ । ବଇଧ ମାର୍ଗ ଛଡ ହୋଇ ॥
ସପ ଯେ ନିଷ୍ଠା ବୈରାଗୀ । ବଇଧ କର୍ମ ଗୃହସ୍ଥ ଭୋଗୀ ॥
ପ୍ରଭୁରୁ ହଠେ ଗୃହସ୍ଥଜନ । ଏ ସ୍ତବ କରିବ କୀର୍ତ୍ତନ ॥

ଜୟ ଜୟ ଜଗନ୍ନାଥ ଜଗୃନୀଳଗିରିବାସୀ ।
କର୍ପୂର ଚନ୍ଦନ ଧୂପ ଦୀପ ଅଭିଳାଷୀ ॥

ଏହି ପ୍ରକାରେ ସ୍ତୁତି ଯେତେ । ଅଭ୍ୟାସ କରିବ ପ୍ରଭାତେ ॥
ମିଳିବ ନଦୀଘାଟରେ ଯାଇଁ । ଯେ ଦନ୍ତକାଷ୍ଠ ଶାସ୍ତ୍ରେ କହି ॥
ଇତର ମୁଖେ ଦନ୍ତ ଘଷି । ନିତ୍ୟକର୍ମ ସାରି ବିଶେଷି ॥
ଜଳେ ପଶି ସ୍ନାନ କରିବ । ଜଳକୁ ସ୍ତୁତି କରୁଥିବ ॥
ଯେ ଥିବ ଗଙ୍ଗାଷ୍ଟକ ମାନ । ପଢ଼ିବ ବ୍ୟାସଙ୍କ ବଚନ ॥
ସନ୍ଧ୍ୟା ତର୍ପଣ ଆଦି ଯେତେ । ସାରିବ ନାନା ଶାସ୍ତ୍ର ମତେ ॥
ବ୍ରାହ୍ମଣ କ୍ଷତ୍ରୀ ବୈଶ୍ୟ ଶୂଦ୍ର । କରିବ ଯା କହୁଛି ବେଦ ॥
ସାରିଣ ନିଜସ୍ଥାନେ ଯିବ । ଚରଣ ଧୋଇଣ ବସିବ ॥
ଚର୍ମ କମ୍ବଳକୁ ଆସନ । ବସିବ କର ଯେ ଧ୍ୟାନ ॥

ଶ୍ଲୋକଃ ।

ଦୃଷ୍ଟ୍ୱା ପୁଣ୍ଡ୍ରାଦିଗାତ୍ରେ ତ ଜାହ୍ନବୀତୋୟ ନିର୍ମଳଂ ।
କୃଷ୍ଣଂ ଦର୍ଶଂଚୈବ ତାରସ୍ୟେହ ପ୍ରେମଂ କୁଳଂ ॥
ଗଙ୍ଗା ମୃତ୍ତିକା ତିଳକରେ । କାଟିବ ଚହ୍ନଦଠାବରେ ॥

ଶ୍ଲୋକଃ ।

ଯେ କଣ୍ଠଲଗ୍ନତୁଳସୀ ନଳିନାକ୍ଷ ମାଳା
ଯେ ବାହୁମୂଳ ପରି ଚିହ୍ନିତ ଶଙ୍ଖ ଚକ୍ରଃ ।
ଯେ ବା ଲଲାଟ ପଟଳେ ଲସଦୂର୍ଦ୍ଧ୍ୱ ପୁଣ୍ଡ୍ରା
ତେ ବୈଷ୍ଣବା ଭୁବନମାଶୁ ପବିତ୍ରୟନ୍ତି ॥

କପାଳେ ଶ୍ରୀଧର ମନ୍ଦର । ଶଙ୍ଖଚକ୍ର ବେଢ ବାହୁର ॥
ତୁଳସୀ ଧାତ୍ରୀ ପଦ୍ମ ମୂଳ । ରୁଦ୍ରାକ୍ଷ କୁଶଗ୍ରନ୍ଥି ଫଳେ ॥
ଅଙ୍ଗନ୍ୟାସ ଯେ କରନ୍ୟାସ । ଧ୍ୟାନ କରିବ ଅଚ୍ୟୁତେଶ ॥

ଋଷିଛନ୍ଦଃ ।

ଓଁ ଷୋଡ଼ଶ ନାମ ବତିଶାକ୍ଷର ମନ୍ତ୍ରସ୍ୟ । ଶ୍ରୀ ଚୈତନ୍ୟଋଷିଃ । ମୋକ୍ଷୋ ଭକ୍ତ ଛନ୍ଦଃ । ଶ୍ରୀରାଧାକୃଷ୍ଣୌ ଦେବତା । କ୍ଲୀଂ ବୀଜଂ । ହ୍ରୀଂ ଶକ୍ତିଃ । ପରମଧାମରୋଧଃ । ମିଥୁନ କର୍କଃ ତୁଳାବଚ୍ଛି ଅର୍ଦ୍ଧ ପୃଷ୍ଠ୍ୟା ସ୍ୱାଗ ନକ୍ଷତ୍ରସ୍ୟ ପରଂ ବ୍ରହ୍ମ ଅବସ୍ଥିତଂ । ଅର୍ଦ୍ଧମାତ୍ର ରୁଦ୍ଧ ସ୍ଥିତଂ । ଇଚ୍ଛଦଂ ହରି ଭକ୍ତିସିଦ୍ଧ୍ୟର୍ଥେ ଜପେ ଯୋଗଃ । ଏବମଙ୍ଗ ନ୍ୟାସଃ । ହରେରାମ ହରେ ରାମ ହୃଦୟାୟ ନମଃ । ରାମ ରାମ ଶିରସି ସ୍ୱାହା । ହରେ ହରେ ଶିଖାୟୈ ବଷଟ୍ । ହରେ କୃଷ୍ଣ ହରେ କୃଷ୍ଣ କବଚାୟ ହୁଁ । କୃଷ୍ଣ କୃଷ୍ଣ ନେତ୍ରାଭ୍ୟାଂ ବୌଷଟ୍ । ହରେ ହରେ କରତଳ କରପୃଷ୍ଠାଭ୍ୟାଂ ଅସ୍ତ୍ରାୟଫଟ୍ ।

ଧ୍ୟାନଂ ।

ଧ୍ୟାୟେଦ୍ଦେବଂ ରାମକୃଷ୍ଣଂ ଯଦୁକୁଳ ନନ୍ଦନଂ ପୀତବାସଂ ରମେଶଂ ।
ଦ୍ୱାବିଂଶତ୍‌ବର୍ଣ୍ଣ ରୂପା ବହୁ ମନ୍ମଥନଂ ଈଶ୍ୱରଂ ଶାନ୍ତ ମୂର୍ତ୍ତିଂ ॥

ଅନ୍ୟ ମନ୍ତ୍ର ବୀଜରେ ଭଜ । ଅଙ୍ଗୁଳରେଖା ମନ୍ତ୍ରବୀଜ ॥

ଶ୍ଳୋକଃ ।

ଅନାମିକା ମଧ୍ୟମା ଷଟ୍ କନିଷ୍ଠା ଦ୍ୱିତୀୟରେବ ଚ ।
ତର୍ଜ୍ଜନୀ ମୂଳ ପର୍ଯ୍ୟନ୍ତଂ କରମାଳା ପ୍ରକୀର୍ତ୍ତିତଂ ॥

ଏ ଗତି ମନ୍ତ୍ର ବୀଜେ କର । ହରି ନାମ ଇଚ୍ଛାରେ ସ୍ମର ॥
ଅଦ୍ୟ ମନ୍ତ୍ରବୀଜ ଜପିବ । ହରି ନାମକୁ ଉଚ୍ଚାରିବ ॥
ଠାକୁର ଠାକୁରାଣୀ ମନ୍ତ୍ର । ଯୁଗଳ ଗାୟତ୍ରୀ ଜପନ୍ତୁ ॥
ଶ୍ରୀଜଗନ୍ନାଥ ଦେବ ନାମ । ଭକ୍ତଜନ ପାଇ ସର୍ବ କାମ ॥
ହରେ ଅନନ୍ତ ବଳଦେବ । ରାମ ସୁଭଦ୍ରାରୂପ ଭାବ ॥

ଅବ ଦରେଷ୍ଟ ସ୍ୱଦର୍ଶନ । ଶ୍ରୀ ଜଗନ୍ନାଥ ମୂର୍ତ୍ତି କୃଷ୍ଣ ॥
ଓ କାର ରୂପୀ ଶ୍ରଧା ହୋନ୍ତି । ଦାରୁନାମ ପଞ୍ଚାଙ୍ଗ ମୂର୍ତ୍ତି ॥

ଶ୍ଳୋକଃ ।

ପ୍ରୀତି ଚତୁର୍ଥୀ ମୂର୍ତ୍ତିଃ ଦଶାର୍ଣ୍ଣଂ କାମ ଗର୍ଭକଂ ।
ଚତୁର୍ଥଂ ଷୋଡ଼ଶ ମନ୍ତ୍ରଂ ଯେ ଜପନ୍ତି ସ ବୈଷ୍ଣବଃ ॥

ଏ ପଞ୍ଚ ମନ୍ତ୍ର ଯେ ଜାଣନ୍ତି । ସେହୁ ବୈଷ୍ଣବ ସାଧୁମତି ॥
ଅନ୍ୟଭଜନେ ଭକ୍ତି ହୋଇ । ଜଗତେ ଶ୍ରଧା କୃଷ୍ଣ ପାଇ ॥
ଏମନ୍ତେ ତୁଳସୀ ପୂଜିବ । ଅନନ୍ତେ ଦଣ୍ଡବତ ହେବ ॥

ଶ୍ଳୋକଃ ।

ତୁଳସି ଶ୍ରୀଦବ ନମସ୍ତୁଭ୍ୟଂ ଜତ୍ୟଂ ମେ ପାପ ହାରିଣୀ ।
ଜଳଂ ଦଦାମି ଦେବେଶି ମମ ପାପକ୍ଷୟଂ କୁରୁ ॥

ଅନନ୍ତେ ନିର୍ମାଲ୍ୟ ଭକ୍ଷଣ । ଶ୍ରୀ କାପଡ଼ା ଅଙ୍ଗେ ଗ୍ରହଣ ॥
ଅଶେଷ ଜନ୍ମର ଯେ ପାପ । କଣିକା ମାତ୍ରେ କରେ ଲୋପ ॥
ଶ୍ରୀ ଅତି ବଡ଼ ଯେ ଗୋସାଇଁ । ଏ ଭାବ ବୁଝନ୍ତି ସେହି ॥
ବୋଲଇ ବଡ଼ ଦବାକର । ଏହୁ ସୁଖକୁ ଅଛେ ମୋର ॥
ଏ ସୁଖ ପରମ ଭକତ । ବ୍ରାହ୍ମଣ ଦବାକର ଚିନ୍ତ ॥

ଇତି ଶ୍ରୀ ଜଗନ୍ନାଥାମୃତେ ଶ୍ରୀ ଅତିବଡ଼ ଜଗନ୍ନାଥ ଦାସ ଗୋସାଇଁ
ଅନୁକ୍ରମଣି ନାମ ଊନବିଂଶୋଽଧ୍ୟାୟଃ ।

---

## ବିଂଶ ଅଧ୍ୟାୟ ।

ଶୁଣ ସୁଜନେ ଦେଇ ମନ । ଏରୂପ କର ଦରଶନ ॥
ଜଗତ ଯେତେ ଠାକୁରାଣ । କହୁଣ ଶ୍ରୀବ ନମସ୍କାର ॥
ଅଦ୍ୟରେ ସିଂହଦ୍ୱାର ସ୍ଥାନ । ପରମ ପାବନ ଦର୍ଶନ ॥
କାଶୀ ବିଶ୍ୱେଶ୍ୱର ଦର୍ଶନ । ତୁଳ ସିଂହକୁ ଦେଖି ପୁଣ ॥

କୈବଲ୍ୟ ହାଟକୁ ଦେଖିବ । କୂର୍ମ ବେଢ଼ା ପ୍ରବେଶ ହେବ ॥
ଭୋଗ ମଣ୍ଡପ ଦରଶନ । ବଟକୁ କର ବେଗେ ମାନ୍ୟ ॥
ମଧ୍ୟେ ମହେଶ ଦେଖିଯିବ । ବଟ ମଙ୍ଗଳାଙ୍କୁ ଦେଖିବ ॥
ବଟ ପୂର୍ବରେ ଦରଶନ । ଜୟ ନନ୍ଦନନ୍ଦନ କୃଷ୍ଣ ॥
ଭୈରବ ମୂରତି ଦେଖିବ । ଗଣେଶଙ୍କ ଅଗ୍ରେ ନମିବ ॥
ବଟେଶ୍ୱରଙ୍କୁ ଦରଶନ । ଦେଖିବ ଅନନ୍ତ ଶୟନ ॥
ଭେଟିବ ଯଜ୍ଞପାଳ ସ୍ପୃହିଁ । ମୁକ୍ତ ମଣ୍ଡପରେ ହୋଇ ॥
କ୍ଷଣେମାତ୍ର ତହିଁ ବସିବ । ନୃସିଂହ ଦେଖି ତହୁଁ ଯିବ ॥
ପଢ଼ ଗଣେଶ ଦରଶନ । କାଳ ବେହଣୀକୁ ଶ୍ରବଣ ॥
ଚଣ୍ଡରେ ଚଣ୍ଡୀକୁ ଦେଖିବ । ବିମଳାକ୍ଷୀ ପାଦେ ନମିବ ॥
ଗୋପୀନାଥଙ୍କୁ ଦରଶନ । କହଣ ଯିବ ତହୁଁ ପୁଣ ॥
ଏଚିହ୍ନ ଦାରୁ ଉକେବର । ଦେଖିବ ଦେଉଳ ପଛର ॥
ଦେଖି ନୃସିଂହ ଉଦାରଣ । ଏକ ମୂରତି ଦାରୁବ୍ରହ୍ମ ॥
ସରସ୍ୱତୀଙ୍କି ଦରଶନ । ନୀଳମାଧବ ଦେଖି ପୁଣ ॥
କାଳକା ଦେବୀଙ୍କି ଦେଖିବ । ଭଣ୍ଡ ଗଣେଶଙ୍କୁ ପୂହିଁବ ॥
ଲକ୍ଷ୍ମୀଙ୍କି ଦର୍ଶନ କରବ । ଦେଉଳେ ମାଧବ ପୂହିଁବ ॥
ପାଦୁକା କୁଣ୍ଡ ଦରଶନ । ଦେଖି ଉରଙ୍ଗ ନାସପୁଣ ॥
ପାତାଳେଶ୍ୱରଙ୍କୁ ଅନାଇ । ହୟଗ୍ରୀବ ମୂର୍ତ୍ତିଙ୍କି ସ୍ପୃହିଁ ॥
ଉତ୍ତର ଦ୍ୱାରେ ପଶିଯିବ । ଅଷ୍ଟଶମ୍ଭୁ ତହିଁ ଦେଖିବ ॥
କୋଇଲି ବୈକୁଣ୍ଠ ଦର୍ଶନ । ଲୋକେଶ୍ୱରଙ୍କ ଦେଖି ପୁଣ ॥
ପୁଣି ଶ୍ରୀପାଦ ପଦ୍ମ ସ୍ପୃହିଁ । ଦେଖିବ ଚୈତନ୍ୟ ଗୋସାଇଁ ॥
ପୁଣ ପୂର୍ବଦ୍ୱାରକୁ ଯିବ । ଏତେଠାରେ ମାନ୍ୟ କରିବ ॥
ଜସଠାକୁ ସମୁଦ୍ର ଉଠଇ । ଦକ୍ଷିଣ ବଟ ଉଶୁଆଇ ॥
ଭଣ୍ଡାର ସରସ୍ୱତୀ ପୁଣ । ଲକ୍ଷ୍ମୀ ଉଚ୍ଛିତି ନାସପୁଣ ॥
ଦେଖଇଲେ ଭଳ ଚଣ୍ଡ ଘୋଷ । ସ୍ନାନ ମଣ୍ଡପକୁ ଅନାଇ ॥

ଜଗମୋହନ ଘର ଗୃହେଁ । ଭଣ୍ଡାରେ ଯଦି ଦେଖ ଯାଇ ॥
ବିଷ୍ଣୁର ଦଶ ଅବତାର । ଦେଖିବ ଭଣ୍ଡାରର ଘର ॥
ଏତେ ଠାବକୁ ଦଣ୍ଡବତ । କରବ ତୋଷ ହୋଇ ଚିତ୍ତ ॥
ଏହି ପ୍ରକାରେ ବୃହରଥର । ଦେଇଲ ପ୍ରଦକ୍ଷିଣ କର ॥
ସମସ୍ତ ଲକ୍ଷଣ ପ୍ରଣାମ । ପଶିବ ଶ୍ରୀ ଜଗମୋହନ ॥
ଅଦେଏ ଚନ୍ଦ୍ରଘୁରୁ ପସ୍ଥର । ସେଠାରେ ଦଣ୍ଡବତ କର ॥
ଚରୁତ ସ୍ତମ୍ଭକୁ ପ୍ରଣାମ । ଜୟ ବିଜୟ ପାଦେ ନମ ॥
ପ୍ରଭୁଙ୍କୁ ଗୃହଁଣ ଭୁବତ । ମସ୍ତକେ ଦେବ ବେଳହସ୍ତ ॥

ଶ୍ଳୋକଃ ।

ନମୋଽସ୍ତ୍ୱନନ୍ତାୟ ସହସ୍ର ମୂର୍ତ୍ତୟେ ।
ସହସ୍ର ପାଦାକ୍ଷି ଶିରୋରୁବାହବେ ॥
ସହସ୍ରନାମ୍ନେ ପୁରୁଷାୟ ଶାଶ୍ୱତେ ।
ସହସ୍ର କୋଟି ଯୁଗଧାରିଣେ ନମଃ ॥

ପୁଣି ଜଗନ୍ନାଥଙ୍କୁ ଗୃହିଁ । ଏରୂପେ ବୋଲିବ ସେଠାଇଁ ॥

ଶ୍ଳୋକଃ ।

ପଦ୍ମଂ ବନ୍ଦେ ଶାନ୍ତଂ କରକମଳଯୋରୁତ୍ଫୁଲ୍ଲ ନମ୍ରାନଂ ।
ନବାଂ କଳାଦ୍ରୌ ନିହିତ ଚରଣୋଽନନ୍ତଶିରସି ॥
ରସାନନ୍ଦୀ ସ୍ୱଧା ସରସ ବପୁରାଲିଙ୍ଗନ ପୂର୍ଣ୍ଣୀ ।
ଜଗନ୍ନାଥଃ ସ୍ୱାମୀ ନୟନ ପଥଗାମୀ ଭବତୁ ମେ ॥

ଏମନ୍ତେ କରବଣ୍ଟ ସ୍ତୁତି । ଜୟ ଜୟ ହେ ଜଗଜ୍ଜ୍ୟୋତି ॥
ଏଣୁ ପରମ ବ୍ରହ୍ମ ଯାରେ । ସ୍ତୁତି କରନ୍ତି ନିରନ୍ତରେ ॥
ପୂର୍ଣ୍ଣ ପଦ୍ମପ୍ରାୟେ ହୋଇ । ଯାହାର ଚକ୍ଷୁ ବିରାଜଇ ॥
ନିବାସ ନୀଳଗିରେ ପର । ଦକ୍ଷପାଦ ଅନନ୍ତ ଶିର ॥
ସୁଧାଙ୍କ ବଦନେ ଅଜନ । ହୃଦୟ ହୃଦନ୍ତରେ ବନ୍ଧ ॥
ତୁମ୍ଭେଁ ତୁମ୍ଭଙ୍କ ଦୃଷ୍ଟି ପାଇ । ପ୍ରେମେ ଅଛନ୍ତି ଯୁକ୍ତ ହୋଇ ॥

ଏମନ୍ତ ସ୍ୱାମୀ ଜଗନ୍ନାଥ । ନୟନେ ଥାନ୍ତି ମୋ ଭକତ ॥
ସଂସାରେ ଯେତେ ଜୀବ ଛନ୍ତି । ଜଗନ୍ନାଥରୁ ଉତପତ୍ତି ॥
ସର୍ବ ପ୍ରଳୟ ଅଙ୍ଗେ ବହି । ଜନମୀ ବାସ ତେଣୁ କହି ॥
ସକଳ ଦେବତାଙ୍କ ଠାରୁ । ଜନ୍ମ ହୋଇଲେ ଶ୍ରୀଅଙ୍ଗରୁ ॥
ଯେଣୁ ଦେବଙ୍କୁ ଜନ୍ମ କଲେ । ଦେବଜନ୍ମା ନାମ ବହିଲେ ॥
ସୃଷ୍ଟିରେ ଯେତେ ଦେବବର । ସେବନ୍ତି ଯାହାର ପୟର ॥
ଦୁଇ ବାହା ହେଇ ଅଛନ୍ତି । ଭକ୍ତଙ୍କୁ ଅଭୟ ଯାଚନ୍ତି ॥
ବାହାରୁ ନାନା ଅବତାର । ହୋଇଣ ମାରନ୍ତି ଅସୁର ॥
ଅଧର୍ମୀ କୁଳ ବିନାଶନ୍ତି । ସ୍ୱଧର୍ମେ ଭକ୍ତଙ୍କୁ ସ୍ଥାପନ୍ତି ॥
ପୂର୍ବ ଜନ୍ମର ପାପ ଯିବ । ଏଜନ୍ମ ପାପ ଅଛେ ଚର ॥
ଗରୁଡ଼ ପଛେ ଦରଶନ । ସେ ପାପ କରନ୍ତି ଦହନ ॥
ଅଳପ ଅଳପ ହସନ୍ତି । ଦର୍ଶନେ ଅଭୟ ଦିଅନ୍ତି ॥
ନସାନ ବଧୂକୁଟ ଘରେ । ବନ୍ଦୁଥାନ୍ତି ଶାଶୁ ଶ୍ୱଶୁରେ ॥
ଗୃହକୁ ବାହାର ନୋହରୁ । କାହାର ମୁଖ ନ ବୃହିଁରୁ ॥
ସେ ଯେବେ ଦର୍ଶନକୁ ଯାଇ । ଅନେକ କାମନା ବାଞ୍ଛଇ ॥
ତାଙ୍କ କାମନା ସର୍ବ ସିଦ୍ଧି । ଯେ ପ୍ରଭୁ କରନ୍ତି ସୁସିଦ୍ଧି ॥
ଏରୂପେ ଅଷ୍ଟ କାଳମାନ । ସେବିବ ପ୍ରଭୁଙ୍କ ଚରଣ ॥

ଶ୍ଳୋକଃ ।

ଭଶାନ୍ତ ପ୍ରାତ ପୂର୍ବାହ୍ନ ମଧ୍ୟାହ୍ନ ମପରାହ୍ନକଂ ।
ସାୟଂ ଦୋଷ ପ୍ରଦୋଷାନ ଇତ୍ୟଷ୍ଟ କାଳ ସେବନଂ ॥

ଏ ଅଷ୍ଟ କାଳ ସେବାମାନ । କହିବା ଶୁଣ ସାଧୁଜନ ॥
ଯେଉଁ କାଳରେ ଯେଉଁ ଗତି । ଏ ଅଷ୍ଟ ଦଣ୍ଡ ଦରପାଷ୍ଟ ॥
ରଜନୀ ଗୃହ ଦଣ୍ଡ ଥିବ । ଭଗ ବଟନ୍ଧାକୁ ସାହବ ॥
ପାହାନ୍ତି ଶଙ୍ଖ କର୍ଣ୍ଣ ଦେଇ । ପଶିବ ଦେଉଳରେ ଯାଇ ॥
ଦକ୍ଷିଣ କବାଟକୁ ଫେଇ । ହେବ ଭଣ୍ଡାର ଘରଠାଇଁ ॥

ଅଖଣ୍ଡ ଛତ୍ରଥିବ ତହିଁ । ତହିଁରେ ଚନ୍ଦୁଆ ଲଗାଇ ॥
ଭିତର କବାଟ ପାଖରେ । ଝିଟ଼ାକ ଢ଼ାଙ୍କିବ ସେଠାରେ ॥
ମହିମା ଜଗତ ଜୀବନ । ଶ୍ରୀ ଅଙ୍ଗେ ଦେବା ସାବଧାନ ॥
ମୃଦଙ୍ଗି କବାଟ ଫେଇ । ପଲଙ୍କ ପାଶେ ହେବ ଯାଇଁ ॥
ଶେଯକୁ ଅଲଗ କରିବ । ଯୋଡ଼ାଇ ଭଣ୍ଡାରେ ଥୋଇବ ॥
ଚନ୍ଦନ ଛେସ ଡକାଇବ । ବେଶ ଲୁଟିଣ କରାଇବ ॥
ବାସି ବସନ କାଢ଼ିନେଇ । ତତ୍ପର ଉତ୍ତରୀୟ ପକାଇ ॥
ମୁଖ ପଖାଳ କର ତହିଁ । ପ୍ରଥମ ଅବକାଶ ଏହି ॥
ସ୍ନାନକୁ ସ୍ଥାନ ସଜାଡ଼ିବ । କୁଣ୍ଡ ଖଟୁଲିକ ଥୋଇବ ॥
ଦଧିଅଁଳା ଦାନ୍ତକାଠି । ତୁଳସୀ ମିଶି ସେବା ଖଟି ॥
ଜିହ୍ୱାକୁ ପାଟଅ ସୁବର୍ଣ୍ଣ । ସୁବାସ ଜଳେ ଆଚମନ ॥
ଅଗ୍ରେ ଦର୍ପଣ ଖଟଅଣି । ସ୍ୱପତାଙ୍ଗ ପାନ୍ତି ବଖାଣି ॥
ବହିର ଅନ୍ତର୍ମାତୃକାରେ । ଦଶବନ୍ଧନ ମୁଦ୍ରାଦରେ ॥
ଜଳଅଁଳା ଦର୍ପଣରେ । ସ୍ନାନ କରାଇବ ତହିଁରେ ॥
ଶ୍ରୀ ଅଙ୍ଗ ପୋଛ ଶୀନବାସେ । ମାହାଣ ମେକ ଅବକାଶେ ॥
ସେ ବେଶ ଉଲଗି କରିବ । ନବୀନ ବସ୍ତ୍ର ଅଙ୍ଗେ ଦେବ ॥
ପୁଷ୍ପ ଅଳଙ୍କାର ସହିତେ । ପାହି ମୁଣ୍ଡି ଅଦେଶ ଯେତେ ॥
ପଣ୍ଡାମାନ ଚୂଳ ସ୍ୱନର । ମୁଖ ପଖାଳ ଏହା କର ॥
ସୂର୍ଯ୍ୟ ଗଣେଶ ମହେଶ୍ୱର । ପୂଜିବ କମ୍ପ ବଜୟୁର ॥
ଅଣସର ପିଣ୍ଡା ପାଶରେ । ଗୋପାଳ ଭୋଗ ପୂଜାଠାରେ ॥
ଠାଅ ପିଣ୍ଡା କର ବଢ଼ାଇ । ଏବୁପେ ଭୋଗ ବଢ଼ାହୋଇ ॥
ସ୍ତ୍ରୀ ଆଳତିର ସିଂହା ରଖି । ଅମୃତ ମଣ୍ଡା ତହିଁ ଯୋଗି ॥
ପାପୁଡ଼ି ବଥାଦନ୍ତ ଅଢ଼ । ପଲତ ନଡ଼ଅ ଅମାଢ଼ ॥
ଏମାନ ମଣୋହି କରଇ । ପୂଜା ସାଇ ସେ ସ୍ଥାନ ଧୋଇ ॥
ଅର୍ଚ୍ଚନରେ ଟେରସ ବାନ୍ଧବ । ପୁଣି ଠାଅ ପିଣ୍ଡା କରିବ ॥

ଦନ୍ତ ପାଣି ଶଙ୍ଖଭୁଳସୀ । ଧୂପକୁ ସଜାଡ଼ି ବସେଷି ॥
ଘଣ୍ଟା ସ୍ତୁଳ ଜପ କରିବ । ଭୋଗ ସମ୍ପୂର୍ଣ୍ଣେ ବଢ଼ାଇବ ॥
ଅବତାରେ ଅନ୍ନ ବ୍ୟଞ୍ଜନ । ପିଠା ଏଣ୍ଡୁରି ଷୀରମାନ ॥
ଘଣ୍ଟ କାହାଳୀ ଯେ ମନ୍ଦସ୍ୱ । ଛଣୀ ତସ୍ପସ ଅଢ଼ କର ॥
ଅଲଟ ଚାମର ଢାଳଣୀ । ନୃତ୍ୟ ଅନନ୍ଦେ ମୁତ ଭଣି ॥
ଯାହାର ଗୁହାର ଯା ଥିବ । ଏକାନ୍ତେ ଜଣାଣ କରିବ ॥
ସୁବର୍ଣ୍ଣ ଦଣ୍ଡ ପନ୍ଥୁଅର । କେ କନ୍ଧ ଧୂପର ସମ୍ଭାର ॥
ଦୂକା ବଢ଼ାଇ ତୋଷଣରେ । ତାମ୍ବୂଳ ଦେବ ଯେ ଅଗ୍ରତେ ॥
ଧୂପ ନାହିକାକୁ ଦେଖାଇ । ଫଟପ ଷ୍ଟି ମୁଖକୁ ବନ୍ଦାଇ ॥
ଏରୂପେ ଦଣ୍ଡଦଣ୍ଡ ଯିବ । ସେବା ପରଯାନ୍ତ ଖଟବ ॥
କର୍ପୂର ଅଳତି ଏଠାରେ । ଷାହାଣ ମେଲାବକାଷରେ ॥
ଏ ବେଶ କାଢ଼ି ପକାଇବ । ପୂର୍ବ ପ୍ରାୟେ ବେଶ କରିବ ॥
ଦ୍ୱିତୀୟ ଧୂପକୁ ଚଳିବ । ମଧ୍ୟେ ଯିବ ଦଣ୍ଡଦଣ୍ଡର ॥
ପୂର୍ଣ୍ଣ ଉପନୈବେଦ୍ୟମାନ । ତହିଁରେ ଚାରିଦଣ୍ଡ ଦୃଷ୍ଟି ॥
ଦିବସ ଶୟନ ନିମନ୍ତେ । ପଲଙ୍କ ପାରିବ ରୁହତେ ॥
ହାଣ୍ଡିବ ଅବଧାନ ହୋଇ । ଚଳଙ୍କେ ବଳେ ପ୍ରଭୁ ଯାଇଁ ॥
ଅଳିଷ ଲକ୍ଷ୍ମୀ ନାରାୟଣ । ପ୍ରଭୁଙ୍କ ଶୟନ କାଳେଣ ॥
କବାଟ ମୁଦିଅଢ଼େ ହେବ । ଅପଣା ବେଷବୃତେ ଯିବ ॥
ଧୀପ ଦହୁଡ଼ ନିବନ୍ତର । ସନ୍ଧ୍ୟା ଅଳତି ନିମନ୍ତ୍ରିର୍ଂ ॥
ଖଟ ଷେଯ ଭଣ୍ଡାରେ ଥୋଇ । ବେଶକୁ ଉଲଗି କରାଇ ॥
ପୁନର୍ବାର କରିବ ବେଶ । ଏଠାରେ ହୋଏ ଅବକାଶ ॥
ସନ୍ଧ୍ୟା ଧୂପର ସେବାମାନ । ପୂର୍ବର ପ୍ରାୟେ ହେବା ଜେନ ॥
ଦେବାସୁର ନାଗ ମନୁଷ୍ୟ । ଦର୍ଶନେ ଚରୁଡ଼ର ପଛ ॥
ଏରୂପେ ଏ ଧୂପେ ଛଟିବ । ଶ୍ରୀମୁଖକୁ ଚାହିଁଣ ଥିବ ॥
ଏମନ୍ତେ ଧୋଳଦଣ୍ଡ ଯିବ । ଦଶଦଣ୍ଡେ ଶୟନ ହେବ ॥

ଷାଠିଏ ଶ୍ରୀମନ୍ତ ସେବାମାନ । ଏମନ୍ତେ ଖଣ୍ଡ ପଦ୍ଧତି ॥
ନିର୍ଦ୍ଧୂତ ଦାଷ ଅବକାଶ । ଏରୂପେ ଅଷ୍ଟକାଳ ଶେଷ ॥
ଶ୍ରୀ ଅତିବଡ଼ ଗୋସାଇଁର । ଯେ ଦାସ ବୋଲଇ ତାଙ୍କର ॥
ଏରୂପେ ସେବା ଯେ କରିବ । ଅନ୍ୟଥ ଭାବକୁ ନ ଯିବ ॥
ଅପର୍ଣା କୁଳସେବା ଏହି । ହୃଦରେ ଧ୍ୟାଇତ ଦାଇ ॥
ଦେଖାଇ ଗ୍ରନ୍ଥେ ଲେଖିଅଛି । ଅନେକ ଗ୍ରନ୍ଥେ ପାଠ ଅଛି ॥
ବୋଲଇ ଦୀପ୍ର ଦିବାକର । ସୁଜନେ ଦୋଷ ମୋ ନଧର ॥
ନିତ୍ୟ ଦିଆ କେଡ଼େ ହୁଅନ୍ତି । ସାଧନ ଦିକ୍ଷା କେ ବୋଲନ୍ତି ॥
କୃପା ଦିକ୍ଷା ଭକ୍ତ କେହି । ତିନ ପ୍ରକାରେ ସିଦ୍ଧି ହୋଇ ॥
ନିତ୍ୟ ପୁରୁଷୋତ୍ତମ ଭଜ । ସେ ନିତ୍ୟ ସିଦ୍ଧ ଭକ୍ତି ମଜ୍ଜ ॥
ନାନା ଅବତାର ଭଜଇ । ତାକୁ ସାଧନ ଦିକ୍ଷା କହି ॥
ସର୍ବଧର୍ମ ହର ଦେଖନ୍ତି । ସ୍ୱୟଂ ଦିକ୍ଷା ଭକ୍ତି ଲଭନ୍ତି ॥
କାହେର କୃପାକୃଷ୍ଣ କରନ୍ତି । କୃପାସିଦ୍ଧି ସେହୁ ବୋଲନ୍ତି ॥
ପ୍ରତିବର୍ଷ କରନ୍ତ ଯେବେ । ସେବା ଲେଖନ୍ତି ଗ୍ରନ୍ଥ ତେବେ ॥
ପୋଷ୍ଟକୋଷ୍ଟଏ ସେବା ହୋଇ । ଯେ ଗ୍ରନ୍ଥ ସମ୍ଭାଳନ୍ତି କାହିଁ ॥
ଏନ୍ତୁ କୋଡ଼ିଏ ଅଧ୍ୟା ଗୀତ । କୋଡ଼ିଏ ପୋଷ୍ଟର ଭଣିତ ॥
ଦେଖାଇ ଲେଖି ଅଛି କହି । ଅନେକ ଗ୍ରନ୍ଥ ପାଠ ଅଛି ॥
ଶ୍ଳୋକହିଁ ଅଛଇ ବହୁତ । ଲେଖିଲେ କେ ସମ୍ଭାଳେ ଗ୍ରନ୍ଥ ॥
ବୋଲଇ ଦୀପ୍ର ଦିବାକର । ଜଗନ୍ନାଥେ ମୋତେ ଉଦ୍ଧର ॥
ଶ୍ରୀ ଅତିବଡ଼ ଜଗନ୍ନାଥ । ପୁରୁଷୋତ୍ତମେ ତାଙ୍କ ସ୍ଥିତ ॥
ନିର୍ଦ୍ଧୂତ ଦାଷ ଅବକାଶ । ସେବନ୍ତି ଜଗନ୍ନାଥ ଦାସ ॥
ତାଙ୍କର ଷୋଳଶିଷ୍ୟ ଯେହୁ । ପୂର୍ବେ କହିଛି ନାମ ମୁହିଁ ॥
ଯେ ଏହି ଭକ୍ତି ଅଭ୍ୟାସ କଲେ । ପ୍ରିୟଙ୍କ ସଙ୍ଗତେ ମିଶିଲେ ॥

ଇତି ଶ୍ରୀ ଜଗନ୍ନାଥାମୃତେ ଶ୍ରୀ ଅତିବଡ଼ ଜଗନ୍ନାଥ ଦାସ
ଅନୁକ୍ରମଣି ନାମ ବିଂଶୋଽଧ୍ୟାୟଃ ।



# ଏକବିଂଶ ଅଧ୍ୟାୟ ।

ଏବେ ଯେ କ୍ଷେତ୍ରର ମହିମା । କହୁବା ଶୁଣ ଗୁଣସୀମା ॥
ପୁରୁଷୋତ୍ତମ ଅଟେ ଯେତେ । ଶୁଣ ସୁଜନେ ଦୃଢ଼ଚିତ୍ତେ ॥
ବହିରଙ୍ଗ ଅନ୍ତରଙ୍ଗରେ । ସାଧନ ଏ ବେନି ପ୍ରକାରେ ॥
ବହିରଙ୍ଗ ଯାହାକୁ କହି । ବାହାରେ ଉଜୁଆନ୍ତି ସେହି ॥
ସଂସାରେ ତୀର୍ଥ କ୍ଷେତ୍ର ଯେତେ । ବହିରଙ୍ଗ ଏହି ସମସ୍ତେ ॥
କୃଷ୍ଣର ନିଜସ୍ଥାନ ନୋହି । ଜାଣନ୍ତି ଅସୁରଙ୍କ ପାଇଁ ॥

ଶ୍ଳୋକଃ ।

ମଥୁରା ଦ୍ୱାରକା ଲୀଳା ଯଃ କରୋତି ଚ ଗୋକୁଳେ ।
ନୀଳାଚଳେ ସ୍ଥିତଃ କୃଷ୍ଣଃ ତାଏବାତ୍ର ଚରାଚରଂ ॥

ଏଥିରୁ ଯେତେ ଅବତାର । ହୋଇ ଲୀଳା କରେ ସଂସାର ॥
ଏହାଙ୍କ ଅଙ୍ଗ ସେହୁ କରେ । ସେ ଲୀଳା ଅଙ୍ଗ ଏ ବହିଲେ ॥
ସେ ଲୀଳା ଅଙ୍ଗେ ଯେ ଭଜନ୍ତି । ବହିରଙ୍ଗ ଭକ୍ତି ସେ ଚିନ୍ତି ॥
ଅସ୍ଥି ମଧ୍ୟରେ ଯେ ଭ୍ରମଇ । ତାହାକୁ ଅନ୍ତରଙ୍ଗ କହି ॥
ଅନ୍ତରଙ୍ଗ ପୁରୁଷୋତ୍ତମ । ସାକ୍ଷାତ ଯହିଁ ପରଂବ୍ରହ୍ମ ॥
ଜାଣି ନ ଜାଣି ଯେ ଭଜଇ । ଅନ୍ତରଙ୍ଗ ଭକ୍ତି ଲଭଇ ॥
ଏକଥା ପ୍ରମାଣ ବଚନ । ଅଷ୍ଟାଦଶ ପୁରାଣ ଶୁଣ ॥
ପ୍ରଥମେ ଶ୍ରୀ ବ୍ରହ୍ମପୁରାଣ । ଦ୍ୱିତୀୟେ ପଦ୍ମ ହୋଏ ପୁଣ ॥
ତୃତୀୟେ ବିଷ୍ଣୁ ପୁରାଣଟି । ଶିବ ପୁରାଣ ଚତୁର୍ଥଟି ॥
ଶ୍ରୀ ଭାଗବତ ପଞ୍ଚମରେ । ନାରଦୀୟ ହୋଏ ଷଷ୍ଠରେ ॥
ମାର୍କଣ୍ଡ ସପ୍ତମେ କହି । ଅଗ୍ନି ପୁରାଣ ଅଷ୍ଟେ ହୋଇ ॥
ଭବିଷ୍ୟ ପୁରାଣ ନବମେ । ବ୍ରହ୍ମ ବୈବର୍ତ୍ତ ଦଶମେ ॥
ଲିଙ୍ଗ ପୁରାଣ ଏକାଦଶେ । ବରାହ ପୁରାଣ ଦ୍ୱାଦଶେ ॥
ସ୍କନ୍ଦ ଯେ ତ୍ରୟୋଦଶ କହି । ବାମନ ଚତୁର୍ଦ୍ଦେ ଲେଖଇ ॥

କୂର୍ମପୁରାଣକୁ ପନ୍ଦରେ । ମତ୍ସ୍ୟପୁରାଣ ଷୋଳଠାରେ ॥
ଗରୁଡ଼ ପୁରାଣ ସତର । ବ୍ରହ୍ମାଣ୍ଡ ପୁରାଣ ଅଠର ॥
ଏ ଅଷ୍ଟାଦଶ ପୁରାଣରେ । ଯା ଲେଖିଛନ୍ତି ମୁନିବରେ ॥
ଗ୍ରନ୍ଥ ବହୁତ ହେବ ବୋଲି । ତେଣୁ ମୁଁ ଶ୍ଳୋକ ନ ଲେଖିଲି ॥
ପଦ୍ୟେ ଲେଖିଲି ସଂସ୍କୃତ । ଅଷ୍ଟାଦଶ ପୁରାଣ ଅର୍ଥ ॥
ସର୍ବ ସମର୍ପି ଶ୍ରୀଚରଣ । ଶ୍ରୀଜଗନ୍ନାଥ ଦରଶନ ॥
ହେଳେରେ କରବ ନିବାସ । ନାମ କୀର୍ତ୍ତନରେ ବିଶ୍ୱାସ ॥
ଅଷ୍ଟକାଳ ସେବାରେ ଥିବ । ନିର୍ମାଲ୍ୟ ପ୍ରତ୍ୟହ ଭକ୍ଷିବ ॥

( ବିଷ୍ଣୁପୁରାଣେ )

ବ୍ରହ୍ମାଙ୍କୁ ଆଜ୍ଞା ଭଗବାନ । ଯେ କରେ ନିର୍ମାଲ୍ୟ ଭୋଜନ ॥
ସଂସାରେ ଉପବାସ ବ୍ରତ । ଯେତେ ପ୍ରକାରେ କହେ ଶାସ୍ତ୍ର ॥
ଯମ ନିୟମ ତପ ଯେତେ । କୃଚ୍ଛ୍ର ଚାନ୍ଦ୍ରାୟଣ ସହିତେ ॥
ତୁଳା ପୁରୁଷ ଅନ୍ନ ଦାନ । ଶାସ୍ତ୍ରେ ଲେଖେ ଯେତେ ବିଧାନ ॥
କୋଟିଏ ବ୍ରାହ୍ମଣ ଭୋଜନ । କୋଟିଏ ଯାଗ ଫଳ ଜାଣ ॥
ବ୍ରହ୍ମସାଧି ବପ୍ର ପଦ୍ମର । ଧୋଇ ସେବକ ଜାର ଶିର ॥
ଏତେ ସାଧନେ ଯେତେ ପୁଣ୍ୟ । ନୁହଇ ନିର୍ମାଲ୍ୟ ସମାନ ॥

( ବ୍ରହ୍ମପୁରାଣେ )

ପ୍ରଥମେ ବ୍ରହ୍ମ ପୁରାଣରେ । ଯେ ଆଜ୍ଞା ଅଛଇ ପୂର୍ବରେ ॥
ସର୍ବ ପୁରାଣ ଷଡ଼ବେଦ । ସକଳ ଶାସ୍ତ୍ରର ପ୍ରସିଦ୍ଧ ॥
ସର୍ବକ୍ଷେତ୍ର ଦେହ ଅନ୍ତ । ପୁରୁଷୋତ୍ତମ ଦାରୁମୂର୍ତ୍ତି ॥
ଓଡ୍ରଶା ଦକ୍ଷିଣ କୂଳରେ । ସମୁଦ୍ରର ଉତ୍ତର ତୀରେ ॥
ବିଜେ ସେ ଦାରୁ ବ୍ରହ୍ମମୂର୍ତ୍ତି । ଦର୍ଶନେ ଲଭ ଭକ୍ତି ମୁକ୍ତି ॥

( ଲକ୍ଷ୍ମୀପୁରାଣେ )

ଧନେ ଲକ୍ଷ୍ମୀଙ୍କି ଭଗବାନ । କହିଲେ ଦୁର୍ଲ୍ଲଭ ବଚନ ॥
ପୁରୁଷୋତ୍ତମର ସମାନ । ନୁହଇ ଅନ୍ୟ କ୍ଷେତ୍ରମାନ ॥

ଅନ୍ୟକ୍ଷେତ୍ରେ ଭକ୍ତି ଯାଇଁଲେ । ଏଥିବା ମିଳଇ ନ ମିଳେ ॥
ପ୍ରବେଶ ମାତ୍ରେ ଏ କ୍ଷେତ୍ରରେ । ଭକ୍ତି ଲଭଇ ବଳାତ୍କାରେ ॥
ପୁରୁଷୋତ୍ତମର ସମାନ । ନୁହଇ ଅନ୍ୟ କ୍ଷେତ୍ରମାନ ॥
ପୁରୁଷୋତ୍ତମ କ୍ଷେତ୍ରରାଜ । ସମୁଦ୍ର ତୀର୍ଥଙ୍କର ରାଜ ॥

( ବ୍ରହ୍ମପୁରାଣେ )

ବ୍ରହ୍ମପୁରାଣେ ଏ ବଚନ । ବ୍ରହ୍ମାଙ୍କୁ ଅଜ୍ଞା ଭଗବାନ ॥
ଯହିଁରେ କଳ୍ପବଟ ରହି । ତହିଁ ମୁଁ ଅଛି ଦେହ ବହି ॥
କୋଟି ପ୍ରଳୟ ଯେବେ ଯାଇ । ସେ ସ୍ଥାନ ନ ଛାଡ଼ଇ ମୁହିଁ ॥
ସେ କ୍ଷେତ୍ର ଅକ୍ଷୟ ମୋହର । ମୁହିଁ ଅଟଇର ବିହାର ॥
ଭବ ନ ଜାଣି ଯେହୁ ଯାଇ । ପ୍ରବେଶ ମାତ୍ରେ ହିଞ୍ଚିହୋଇ ॥
ଏହୁ ପୁରାଣେ ଋଷିନକେ । ବ୍ରହ୍ମା କହିଲେ ଏହି ବାକ୍ୟେ ॥
ସକଳ ବେଦ ବେଦାନ୍ତରେ । ଯେତେ ଶାସ୍ତ୍ର ଅଛି ସଂସାରେ ॥
ସେହି ପରମ ଅତ୍ମାମୂର୍ତ୍ତି । ପୁରୁଷୋତ୍ତମଙ୍କୁ ବୋଲନ୍ତି ॥
ଶ୍ରୀଜଗନ୍ନାଥେ ଯେ ଅଛନ୍ତି । ସର୍ବ ପରମ ଅତ୍ମା ସେହି ॥
ପ୍ରଳୟକାଳେ ଏହୁ ଅଙ୍ଗେ । ସ୍ଥାବର ଜଙ୍ଗମାଦି ସଙ୍ଗେ ॥
ଇନ୍ଦ୍ରଦ୍ୟୁମ୍ନ ରାଜାଠାରେ । ବ୍ରହ୍ମ କହିଲେ ଏ ଜ୍ଞାନରେ ॥
ସତ୍ୟ ସତ୍ୟ ସତ୍ୟ କରଣ । ହିବାର କହୁଛି ମୁଁ ପୁଣ ॥
କୋଟି ପ୍ରଳୟ ଯେବେ ଯାଇ । ଦେଉଳ ପ୍ରତିମା ଭଜଇ ॥
ତେବେ ଏ ସ୍ଥାନ ନ ଛାଡ଼ଇ । ନିଶ୍ଚିନ୍ତେ ଲୀଳା କରୁଥାଇ ॥
ପୁଣି କହନ୍ତି ଭଗବାନ । ଶୁଣହେ ରାଜା ଦେଇ ମନ ॥
ସମୁଦ୍ର ନିକଟ ତୀରରେ । ସଂପୂର୍ଣ୍ଣ ବ୍ରହ୍ମରୂପ ଧରେ ॥
ଜାଣି ନ ଜାଣି ଯେ ଭଜନ । ମୋତେ କରନ୍ତି ଦରଶନ ॥
ସେ ନରକାଳରେ ଭକ୍ତି ପାନ୍ତି । ଅଭୟ ପଦେ ସେ ମିଶନ୍ତି ॥

( ସ୍କନ୍ଦପୁରାଣେ )

ତବେ ଯେ ଦରଶନ ମାତ୍ରକ । ମୈତ୍ରେୟେ କହନ୍ତି ବଚନ ॥

ଅନ୍ୟ କ୍ଷେତ୍ରରେ ସାଧି ସାଧି । ଯେତେ ତପସ୍ୟା କେତେବର୍ଷ ॥
ସେ ଭୋଗ ଅନ୍ତେ କ୍ଷୟ ଯାଇ । ପୁରୁଷୋତ୍ତମେ ଯେ ମିଳଇ ॥
ଜନା ତପରେ ପାଇ ଭୋଗ । ଅକ୍ଷୟ କଳ୍ପକୋଟି ଯୁଗ ॥
ଯାହାର ଭକ୍ତି ବୁଦ୍ଧି ହେବ । ସେ କପିଁ ଏ କ୍ଷେତ୍ର ଛାଡ଼ିବ ॥

( ବ୍ରହ୍ମପୁରାଣ ସ୍ତୋତ୍ରେ )

ବ୍ରହ୍ମା ବୋଲନ୍ତି ଭଗବାନ । ତୁମ୍ଭେ ଅବିନାଶୀ ଅଜନ ॥
ପୁରୁଷୋତ୍ତମ କ୍ଷେତ୍ରଅତ୍ମା । ମୋର ସର୍ବଦୋଷ ନାଶନ୍ତା ॥

( ସ୍କନ୍ଦପୁରାଣେ )

ଦୁର୍ବାସା କପିଳଙ୍କ ଆଗେ । ବ୍ୟାସ କହିଲେ ଅନୁରାଗେ ॥
ଉତ୍କଳ ଦେଶେ ନୀଳଗିରି । ତହିଁରେ ଦାରୁଭୂତ ହରି ॥
ସଚ୍ଚିଦାନନ୍ଦ ବ୍ରହ୍ମ ବହି । ଦର୍ଶନେ ବୃଦ୍ଧି ସିଦ୍ଧି ପାଇ ॥
କାର୍ତ୍ତିକେଶ୍ୱର ଶିବ ଆଗେ । କହନ୍ତେ ତୀର୍ଥ ହିତ ବେଗେ ॥
ଈଶ୍ୱର ବୋଇଲେ କୁମର । ତୀର୍ଥେ କି ପ୍ରୟୋଜନ ତୋର ॥
ପୁରୁଷୋତ୍ତମେ ଯେବେ ଯିବୁ । ଶ୍ରୀଜଗନ୍ନାଥଙ୍କୁ ଦେଖିବୁ ॥
ବ୍ରହ୍ମାଣ୍ଡେ ଅଛି ତୀର୍ଥ ଯେତେ । ଦର୍ଶନେ ଲଭିବୁ ତୁହିତେ ॥
ଅଷ୍ଟ ପ୍ରକାରେ ଭକ୍ତି ପାଇ । ତା ଛଡ଼ି ଅନ୍ୟ କେବା ଯାଇ ॥
ସ୍ମରଣ କରିବ ମନରେ । ଭଜନ କରିବ ମନ୍ତ୍ରରେ ॥
ଧ୍ୟାନ କରିବ ମନସୁଖେ । କୀର୍ତ୍ତନ କରୁଥିବ ମୁଖେ ॥
କ୍ଷେତ୍ରେ ବାସ କରି ରହିବ । ଅନ୍ନେ ନିର୍ମାଲ୍ୟ ଖାଇବ ॥
ତୀର୍ଥସଙ୍ଗେ ସ୍ନାନ କରିବ । କ୍ଷେତ୍ରେ କଳେବର ତେଜିବ ॥
ଏଥିଁ ଯେ ଗୋଟିଏ କରନ୍ତି । ଅନ୍ତରଙ୍ଗ ଭକ୍ତି ଲଭନ୍ତି ॥
ସାଧୁ ଅସାଧୁ ଅବା କେହି । ଚରମ ପଦ ପାନ୍ତି ସେହି ॥

( ଶ୍ରୀଭାଗବତେ )

ନାରଦ ଯୁଧିଷ୍ଠିର ଆଗେ । କହିଲେ ଦକ୍ଷଯଜ୍ଞ ସ୍ୱଭେ ॥

ଦେଖ ପୁରୁଷୋତ୍ତମ କ୍ଷେତ୍ରେ । ବ୍ରହ୍ମ ସ୍ୱରୂପ ପରଯନ୍ତେ ॥
ତାହାଙ୍କୁ ଲୋକେ ଦେଖନ୍ତି । ବେଦ ଯାହାର ଗୁଣ ଗାନ୍ତି ॥
ସବୁର ହୃଦେ ଯା ବିହାର । ଦାରୁ ମୂରତ ସେ କ୍ଷେତ୍ରର ॥
ତାହାଙ୍କୁ କଲେ ଦରଶନ । ଭକ୍ତି ମୁକ୍ତି ଦୁଇ ସାଧନ ॥
ଚନ୍ଦ୍ରକେତୁ ରଜା ଅଗ୍ରତ । ନାରଦ କହିଲେ ଏମନ୍ତ ॥
ଯାହାଙ୍କୁ ଲୋଚନ ମାର୍ଗରେ । କେହି ନ ଦେଖେ ଯୁଗାନ୍ତରେ ॥
ଯାହାର ମହିମା ଗଣନେ । ନାହିଁ ବେଦ ବେଦାନ୍ତମାନେ ॥
କାଳରୁ ବ୍ରହ୍ମ ପରଯନ୍ତେ । ବୋଲି ଜାଣୁଛନ୍ତି ଭାରତେ ॥
ସେ ଭାବୁଁ ଭକ୍ତ ତାରିବାରେ । ଦାରୁ ମୂର୍ତ୍ତି ନୀଳକନ୍ଦରେ ॥

[ ବ୍ରହ୍ମବୈବର୍ତ୍ତେ ]

ଶଙ୍କର ଦେହେ କ୍ଷୀର ଥାଇ । ବୁହନ୍ତେ ସ୍ତନରୁ ସ୍ରବଇ ॥
ସେରୂପେ ସର୍ବ ଘଟେ ସ୍ଥିତି । ଅଟନ୍ତି ଯେଉଁ ଜଗଜ୍ୟୋତି ॥
ପୁରୁଷୋତ୍ତମ ଦେବେ ଯିବ । ଏକଠାରେ ତାଙ୍କୁ ଦେଖିବ ॥
କ୍ଷୀର ସମୁଦ୍ରତଟେ ଯାଇ । ଦେବେ ପୁଛିଲେ ଜୀବଗ୍ରାହୀ ॥
ସବୁ କାଳରେ ତୁମ୍ଭେ ଯାଇଁ । କାହିଁରେ ଥାଅ ସ୍ଥିର ହୋଇ ॥
ଶୁଣି ବୋଇଲେ ଭଗବାନ । ଦେବତା ମାନେ ତୁମ୍ଭେ ଶୁଣ ॥
ବହୁତ କ୍ଷେତ୍ର ଏ ସଂସାରେ । ତୀର୍ଥ ଅଛନ୍ତି ବିଶ୍ୱମୂରେ ॥
କାହିଁ ମୋ ମନ ନ ବସଇ । ପୁରୁଷୋତ୍ତମେ ଥାଇ ମୁହିଁ ॥
ଲକ୍ଷ୍ମୀଙ୍କ ଯୋଗରେ ମୁଁ ତାହିଁ । ଧ୍ୟାନ ଭଜନେ ନ ମିଳଇ ॥
ପୁରୁଷୋତ୍ତମ ଯେହୁ ଯାଇ । ସେ ମୋତେ ସାକ୍ଷାତେ ଦେଖଇ
ଯେ କ୍ଷେତ୍ର ପୁରୁଷୋତ୍ତମ ନାମ । ସାକ୍ଷାତ ବୋଲି ମୁଁ ଜାଣିମ ॥
ସତ୍ୟ ସତ୍ୟ ସତ୍ୟ କରଣ । କହୁଛି ସର୍ବ ଦେବେ ଶୁଣ ॥
ଯେମନ୍ତ ପ୍ରାଣୀ ମରିବାରେ । ଇଚ୍ଛା ନ କରନ୍ତି ହୃଦରେ ॥
ପୁରୁଷୋତ୍ତମ ଛାଡ଼ିବାକୁ । ତେମନ ମନ ନୋହେ ତାକୁ ॥

( ସ୍କନ୍ଦ ପୁରାଣେ )

ଚରାଚର ଯହିଁ ଜାତ । ଯହିଁରୁ ଅଶେଷ ଜଗତ ।
ସେ ପ୍ରଭୁ ଦାରୁ ମୂର୍ତ୍ତି ହୋଇ । ପୁରୁଷୋତ୍ତମେ ଛନ୍ତି ରହି ।

[ ବ୍ରହ୍ମ ପୁରାଣେ ]

ସୁର ଅସୁର ନର ଯେତେ । ମୋହର ମାୟାରେ ସମସ୍ତେ ॥
ପୁରୁଷୋତ୍ତମ ନ ଜାଣନ୍ତି । ଅନ୍ୟକ୍ଷେତ୍ର ଶ୍ରେଷ୍ଠ ମଣନ୍ତି ॥
ଅନ୍ୟ ମୂରତିଙ୍କ ମୋହର । ଅର୍ଚ୍ଚେ କରନ୍ତି ପରସ୍ପର ॥
ପ୍ରତ୍ୟକ୍ଷେ ଅଛି ଏଥି ମୁହିଁ । ଗୁହ ଭଜନ୍ତି ଅନ୍ୟେ ଯାଇ ॥

( କୂର୍ମ ପୁରାଣେ )

ବ୍ରହ୍ମା ବୋଲନ୍ତି ଋଷି ଶୁଣ । ପୁରୁଷୋତ୍ତମ କ୍ଷେତ୍ର ଗୁଣ ॥
ତ୍ରିବିଧ ତାପେ ତାପି ହୋନ୍ତି । ଅସ୍ଥା ଉଦ୍ଧାର ନ ପାରନ୍ତି ॥
ବ୍ରହ୍ମ ସ୍ତମ୍ଭାନ୍ତ ପର୍ଯ୍ୟନ୍ତେ । ସର୍ବେ ଜଡ଼ିତ ମାୟା ପଥେ ॥
ଯେବେ ଦେଖନ୍ତି ଦାରୁମୂର୍ତ୍ତି । ସୁହିଁବା ମାତ୍ରେ ତରି ଯାନ୍ତି ॥
ଜଗନ୍ନାଥଙ୍କୁ ଭେଟି ଦେବ । ବିପ୍ରେ ବେଦ୍ରଜନ କରାଇବ ॥
ଏଣେ ଭକତ ଜାତ ହୋଇ । ନିତ୍ୟ ଲୋକରେ ବିହରଇ ॥
ସେ ପ୍ରଭୁ ଦିବ୍ୟମୂର୍ତ୍ତି ଧରି । ବିରାଜୁଛନ୍ତି ନୀଳଗିରି ॥

( ନୃସିଂହ ପୁରାଣେ )

ସଂସାର ସିନ୍ଧୁ ମଧ୍ୟେ ବୁଡ଼ି । ମାୟା ଶାଂକୋଳ ଅଛି ପଡ଼ି ॥
ବ୍ରହ୍ମ ଯାମଳେ ଏହି ପଦ । ବଶିଷ୍ଠ ଅଗସ୍ତି ସମ୍ବାଦ ॥
ଯେ ଅବା ଭକତ ବାଞ୍ଛନ୍ତି । ମୁକ୍ତି ଚିନ୍ତନ ବା କରନ୍ତି ॥
କାମଧେନୁର ପ୍ରାୟେ ହୋଇ । ସେ ଯାହା ବାଞ୍ଛେ ତାହା ପାଇ ॥
ଥାଇ ଶ୍ରୀମୂର୍ତ୍ତି ଦରଶନ । ଲୁବ୍ଧେ ଯେ ବାରେ ବୋଲେ ନାମ
ସେ ପ୍ରାଣୀ ଦିବ୍ୟଭକ୍ତି ପାଇ । ନିର୍ବାଣ ଫଳେ କେବା କହି ॥
ଅଗ୍ନି ନ ଥାଇ ସନ୍ନିଧିରେ । ସୁସ୍ଥ ଭରସା ହୃଦୟରେ ॥
ଅଗ୍ନି ଅଣ ଦେଖିବା ଖର । ଶୁଣି ପଳାଏ ଯେସନ୍ତେ ସ୍ମେର ॥

ଏମନ୍ତେ ଯେବା ପାପୀ ପ୍ରାଣୀ । ପୁରୁଷୋତ୍ତମ ବୋଲି ଭଣି ॥
ଅଜନ୍ମ କୋଟି ପାପ ତାର । ସ୍ମରଣ ମାତ୍ରେ ହୋଏ ଦୂର ॥
ବୋଲଇ ବପ୍ର ଦବାକର । ଶ୍ରୀ ଜଗନ୍ନାଥ ପ୍ରଭୁ ମୋର ॥
ସ୍ମରଣ ମୋର ଜଗନ୍ନାଥ । କର୍ଣ୍ଣେ ଶୁଣିବ ସେ ଚରିତ ॥
ଜିହ୍ୱା ଜଗନ୍ନାଥ ବୋଲିବ । ନୟନ ଶ୍ରୀ ମୂର୍ତ୍ତି ଦେଖିବ ॥
ଶିର ପୁରୁଷୋତ୍ତମ ପୁର । କରୁ ଯେ ଥିବ ନମସ୍କାର ॥
ଶ୍ରୀ ଅତିବଡ଼ ଯେ ଗୋସାଇଁ । ସର୍ବ ଶିଷ୍ୟଙ୍କୁ ଏହା କହି ॥
କ୍ଷେତ୍ର ଦେବତା ଛଡ଼ାଇଲେ । ପୁରୁଷୋତ୍ତମ ଦେଖାଇଲେ ॥

ଇତି ଶ୍ରୀ ଜଗନ୍ନାଥାମୃତେ ଶ୍ରୀ ଅତିବଡ଼ ଜଗନ୍ନାଥ ଦାସ ଗୋସାଇଁ
ଅନୁକ୍ରମଣି ନାମ ଏକତ୍ରିଂଶୋଽଧ୍ୟାୟଃ ।



## ଦ୍ୱାତ୍ରିଂଶ ଅଧ୍ୟାୟ ।

ବ୍ରହ୍ମା ବୋଲନ୍ତି ଋଷି ଶୁଣ । ପୁରୁଷୋତ୍ତମର ପ୍ରମାଣ ॥
ଏଣୁ ବ୍ରହ୍ମାଣ୍ଡେ ସମ ନାହିଁ । ଭକ୍ତି ମୁକ୍ତି ଦୁଇ ଦଅଇ ॥
ପୁରୁଷୋତ୍ତମ ଯେ ବୋଲଇ । ଦଶ ପ୍ରକାରେ ଭକ୍ତି ପାଇ ॥
ସ୍ମର ପ୍ରକାରେ ଭକ୍ତି ମାନ । ଶ୍ରବଣେ ଲଭନ୍ତି ଜନ ॥
କ୍ରିମି କୀଟ ପତଙ୍ଗ ଯେହୁ । ମଲେ ଉତ୍ତମ ଗତି ପାଇ ॥
ପୁରୁଷୋତ୍ତମ କ୍ଷେତ୍ର ବର । ଯେ ତହିଁ ରହେ ସମ୍ବତ୍ସର ॥
କି ଅବା ମାସେକ ରହଇ । ସେ ସର୍ବ କାମସିଦ୍ଧା ହୋଇ ॥
ତୀର୍ଥ ମାନଙ୍କରେ ଯାନ । ଏ କ୍ଷେତ୍ରେ କଲା ଯେଉଁ ଜନ ॥
ସେ ସର୍ବ ତୀର୍ଥେ ସ୍ନାନ କଲା । ଚହ୍ଡିଛି ଅଙ୍ଗ ନିର୍ମଳା ॥
ଯେ କ୍ଷେତ୍ରେ ବସିଣ ଡୋଳାଏ । ଯୋଗ ସାଧିଲା ଫଳ ପାଏ ॥
ସ୍ୱେଚ୍ଛାରେ ଯେ କରେ ଭୋଜନ । ଲଭେ ବ୍ରତସ୍ୟ ଫଳମାନ ॥
ଯେ କାର୍ଯ୍ୟ ଅର୍ଥେ ବୁଲି ଯାଇ । ପ୍ରଦକ୍ଷିଣର ଫଳ ପାଇ ॥

ସେ ଲମ୍ବହୋଇ ନିଦ୍ରାଯାଇ । ଦଣ୍ଡବତ ଫଳ ଲଭଇ ॥
ଯେ କ୍ଷେତ୍ରେ କଳ କରୁଥାଇ । ସ୍ତୁତି କଲାର ଫଳ ପାଇ ॥
ଯେ ଗାଳି କରି କହୁଥାଇ । ମନ୍ତ୍ର ଜପିଲା ଫଳ ପାଇ ॥
ଜଗନ୍ନାଥ ବୋଲି ଉଚ୍ଚେଣ । ଯେ ମୁଖେ କରେ ଉଚ୍ଚାରଣ ॥
ପୃଥ୍ୱୀରେ ଯେତେ ମନ୍ତ୍ର ରହି । ସବୁ ଜପିଲା ଫଳ ପାଇ ॥
ଋଷି ବୋଲନ୍ତି ବ୍ରହ୍ମା ସ୍ୱହିଁ । ଆଶ୍ଚର୍ଯ୍ୟ କହିଲ ଗୋସାଇଁ ॥
ଏମନ୍ତ ମହିମା କ୍ଷେତ୍ରର । ଭକ୍ତି ମିଳେ ଦଶ ପ୍ରକାର ॥
ପ୍ରାଣୀଙ୍କି ନିସ୍ତାରିବା ଅର୍ଥେ । କ୍ଷେତ୍ରେ ବସନ୍ତେ ଜଗନ୍ନାଥେ ॥
ଥିଲେ ମଲେ ଦୁଇ ପ୍ରକାର । ନିତ୍ୟରେ ତରନ୍ତି ନର ॥
ପ୍ରାଣିଙ୍କ ଉଦ୍ଧାର ନିମନ୍ତେ । କ୍ଷେତ୍ରେ ବିଜୟେ ଜଗନ୍ନାଥେ ॥
ଯେତେକ କ୍ଷେତ୍ର ଛନ୍ତି ମହୀ । ଯେତେକ କ୍ଷେତ୍ର ପୃଥ୍ୱୀ ରହି ॥
ପୁରୁଷୋତ୍ତମ ଭକ୍ତି ସମ । ଷୋଳକଳାକୁ ନୋହେ କ୍ଷମ ॥
ବ୍ରହ୍ମା ସହିତେ ଋଷି ଯେତେ । ଭବନ୍ତି ନାହିଁ ଅନ୍ୟ ଚିତ୍ତେ ॥
ପୁରୁଷୋତ୍ତମଙ୍କୁ ଅନନ୍ତ । ସର୍ବଦା କାଳେ ଭଜୁଥାନ୍ତି ॥
ବ୍ରହ୍ମା ବୋଲନ୍ତି ଋଷି ଶୁଣ । ଯେ ସର୍ବ ଚନ୍ଦ୍ରଗ୍ରହଣ ॥
ସକଳ ବ୍ରତ ଅସ୍ୱଧନ । ସକଳ ତୀର୍ଥରେ ସ୍ନାହାନ ॥
ସର୍ବ ଦେବତା ପୂଜା କରେ । ଅଛରୁଛ ବ୍ରତକୁ ଧରେ ॥
ସକଳେ ଯାଗ ସିଦ୍ଧି ହୋଇ । ସକଳ ଦାନକୁ ଦଅଇ ॥
ସେ ସେଠି ଅଙ୍ଗେ ଭକ୍ତି କରେ । ମୁକ୍ତି ଅଷ୍ଟାଦଶ ପ୍ରକାରେ ॥
ଏରୂପେ ସିଦ୍ଧି ଛନ୍ତି ଯେତେ । ସହସ୍ରେ ଯୁଗ ପର୍ଯ୍ୟନ୍ତେ ॥
ଅନ୍ୟ କ୍ଷେତ୍ରକୁ ଭଜୁଥାଇ । ଅଥବା ମିଳେ ନ ମିଳଇ ॥
ପୁରୁଷୋତ୍ତମ ପ୍ରବେଶରେ । ସର୍ବ ସିଦ୍ଧି ମିଳେ ପାଶରେ ॥
ସ୍ମୃତି ହେବ ଯେଉଁ ନର । ପୁରୁଷୋତ୍ତମ ଆଜ୍ଞା ତାର ॥
କେ ଅବା ଯାଇ ଅନୁଧାଇ । କି ଅବା ହୃଦରେ ଭାବଇ ॥
କି ଅବା କ୍ଷେତ୍ର ଗୁଣ ଗାଇ । ସାଧୁମାନଙ୍କୁ କହୁଥାଇ ॥

ଦୁଃଖ ସାଗରୁ ସେ ତରନ୍ତି । ଭକ୍ତିରେ ମହାସୁଖ ପାଇ ॥
ମଥା ତାଏଁଣ ଯେତେ ଲୋକ । ଅନ୍ତଅଦେହ୍ରୁ ଯେତେ ଲୋକ ॥
ଯେବେ ସେ କ୍ଷେତ୍ରେ ପ୍ରବେଶନ୍ତି । ମାୟା ସଂସାରୁ ତରି ଯାନ୍ତି ॥
ବଟ ବୃକ୍ଷ ମୂଳରେ ଅସି । ଯେ ପ୍ରାଣୀ ମୁହୂର୍ତ୍ତେକ ବସି ॥
ସେ ସର୍ବଭକ୍ତି ଫଳ ପାଇ । ନିତ୍ୟ ସେବାରେ ଜଣେ ସେହି ॥
ଯା ବାଞ୍ଛା କରେ ତାର ଚିତ୍ତ । ସେ ସିଦ୍ଧି ହୁଅଇ ପ୍ରାପତ ॥
ଯୋଗିଙ୍କ ଦୁର୍ଲ୍ଲଭ ଯେ ଭାଗ୍ୟ । ତହିଁ ପ୍ରବେଶ ହୋଏ ବେଗ ॥
ଯାର ଅଶେଷ ଭାଗ୍ୟ ଥିବ । ପୁରୁଷୋତ୍ତମକୁ ସେ ଯିବ ॥

[ ବିଷ୍ଣୁ ପୁରାଣେ ]

କଳପବଟ ଦରଶନ । କରିବ ପାତକ ଦହନ ॥
ସର୍ବ କାର୍ଯ୍ୟ ଦୂର କରିବ । ପୁରୁଷୋତ୍ତମ ନିଶ୍ଚେ ଯିବ ॥
ହେ ମୁନିମାନେ ତୁମ୍ଭେ ଶୁଣ । କାମାଦ ବାଞ୍ଛେ ଯେଉଁଜନ ॥
ଧର୍ମ ମାଗିଲେ ଧର୍ମ ପାଇ । କାମୀ ଯେ କାମନା ଲଭଇ ॥
ଅର୍ଥ ମାଗେଲେ ପାଇ ଅର୍ଥ । ମୋକ୍ଷାର୍ଥୀ ମୋକ୍ଷକୁ ପ୍ରାପତ ॥
ଉତ୍ତରେ ବିରଜା କ୍ଷେତ୍ରରୁ । ଦକ୍ଷିଣେ ଲେଙ୍କେଶ୍ୱର ଠାରୁ ॥
ପଶ୍ଚିମେ ଭୁବନ ଈଶ୍ୱର । ପୂର୍ବରେ ଅର୍କ ତୀର୍ଥ ସାର ॥
ଦଶଯୋଜନ ଯେ ବୋଲାଇ । ସବୁ ବ୍ରହ୍ମାଣ୍ଡେ ସାର ଏହି ॥
ତଳେ ଅଛଇ ସାତପୁର । ଉପରେ ସାତପୁର ସାର ॥
ସାତ ଦ୍ୱୀପ ସାତସାଗର । ଏଥିରେ ସାର କ୍ଷେତ୍ରବର ॥
ଏଥିରେ ଯେତେ ଜନ ଛନ୍ତି । ମଲେ ଯମକୁ ନ ଜାଣନ୍ତି ॥
ଦୁଃଖ ସାଗରୁ ତରିଯାନ୍ତି । ସୁଖେ ନିତ୍ୟରେ ବିହରନ୍ତି ॥
ଏଥିମଧ୍ୟରେ ପଞ୍ଚକୋଶ । ଶ୍ରୀ ଜଗନ୍ନାଥଙ୍କ ନିବାସ ॥
ତହିଁକି ଯେତେ ଜନ ଯାନ୍ତି । ଦେବତାମାନ ବୁହୁଁ ଥାନ୍ତି ॥
ଭକ୍ତିରେ ହୋଇଣ ଭୂଷଣ । ଅଙ୍ଗେ ଦଣଇ କୃଷ୍ଣ ଚନ୍ଦ୍ର ॥
ସଂସାର ମଧ୍ୟେ ଧିଦ୍ଧି ଯେତେ । ଯୋଡ଼ାଇ ଥାନ୍ତି ତା ସଙ୍ଗତେ ॥

ପୁରୁଷୋତ୍ତମ ଭୂମେ ଯାଅ । ଅମ୍ଭଙ୍କ ସଙ୍ଗ କର ନାଅ ॥
ମୁକ୍ତି ତା ଅଗ୍ରତରେ ଥାଇ । ଭକ୍ତି ବେନି ପାଖେ କହଇ ॥
ଅଷ୍ଟପାଖରେ ଦୁଇ ସିଦ୍ଧି । ଗୋଡାଇ ଥାନ୍ତି ନିରବଧି ॥
ମୁକ୍ତି ବୋଲଇ ବାଞ୍ଛା ମୋତେ । ବୈକୁଣ୍ଠ ପଦ ଦେବି ତୋତେ ॥
ଭକ୍ତି ବୋଲଇ ବାଞ୍ଛ ମୋତେ । ପ୍ରଭୁଙ୍କ ସେବା ଦେବି ତୋତେ ॥
ପୁରୁଷୋତ୍ତମ କଥା ଏହି । ଯାହା ବାଞ୍ଛିବ ତାହା ପାଇ ॥
ଦଣ୍ଡାର୍କେ ଦକ୍ଷିଣ ପାରୁଶେ । ଦଇବ ଯୋଗେ ଯେବେ ବସେ ॥
ଭକତ ମୁକ୍ତି ବାଞ୍ଛା ଯାର । ଯାଅ ପୁରୁଷୋତ୍ତମ ପୁର ॥

[ ନୃସିଂହ ପ୍ରସଙ୍ଗେ ]

ଯୋଗୀ ଇନ୍ଦ୍ରଦ୍ୟୁ ନଗ୍ରହଣ । ବାରଣସୀ କ୍ଷେତ୍ରରେ ପୁଣ ॥
ଯୁଗାନ୍ତ ଯାଏକ ଯା ନ ପାଇ । ପୁରୁଷୋତ୍ତମ କ୍ଷେତ୍ରେ ପାଇ ॥
ଦଣ୍ଡାର୍କେ ଦକ୍ଷିଣ ପାରୁଶେ । ଦଇବ ଯୋଗେ ଯେବେ ବସେ ॥
ସେ ପୁଣ୍ୟ ତତକ୍ଷଣେ ପାଇ । ଏଥି ସଂଶୟ କିଛି ନାହିଁ ॥
ବହ୍ମା କହନ୍ତ ମୁନି ଶୁହଁ । ବାରଣସୀକ୍ଷେତ୍ରରେ ଯାଇ ॥
ଧର୍ମସ୍ତ ଇନ୍ଦ୍ରଦ୍ୟୁ ନଗ୍ରହ । ଅଠଯୁଗ ଯେବେ ରହଇ ॥
ତହିଁରେ ଯେତେ ପୁଣ୍ୟ ହୋଇ । ପୁରୁଷୋତ୍ତମ କ୍ଷେତ୍ରେ କହ ॥
ସ୍ୱଭୂମୀସେ ଦିନେ ରହଇ । ତେତିକ ଫଳକୁ ଲଭଇ ॥
କାମ୍ୟ କର୍ମ ନ କରବ । ହେ ସାଧୁ କ୍ଷେତ୍ରୋତ୍ତମେ ଯିବ ॥
ପ୍ରଭୁଙ୍କୁ କରବ ଦର୍ଶନ । ନିର୍ମାଲ୍ୟ କରବ ଭୋଜନ ॥
ଏତେକେ ସର୍ବ ସାଧ୍ୟ ହେବ । ନିତ୍ୟ ସେବାରେ ସୁଖ ଥିବ ॥

( ଲିଙ୍ଗପ୍ରସଙ୍ଗେ )

କଣ୍ୱଋଷିଙ୍କି ଭଗବାନ । ପୂର୍ବେ କହିଲେ ଏ ବଚନ ॥
ବୃଦ୍ଧ ବାଳକ ବା ଚଣ୍ଡାଳ । ଶ୍ୱାନ ଖର ଗଜ ଶୃଗାଳ ॥
ଜ୍ଞାନୀ ଅଜ୍ଞାନୀ ଅବା ଯେତେ । ଏ ମୋର କ୍ଷେତ୍ରରେ ମିଳନ୍ତେ ॥

ଂକ୍ଷେତ୍ରେ ଧର୍ମ୍ୟଜନ୍ତ ପାଇ । ଅନ୍ୟ ଉପମା ଦେବା କାହିଁ ॥
ଶୁଣିଣ ମୋହର ବଚନ । ପ୍ରତେ ନ ଯାଇ ଯାର ମନ ॥
ଜାଣିବ ସ୍ତତଲ୍ଲ ବଧାତା । ତାର ନରକ ମାର୍ଗଚନ୍ତା ॥
ବ୍ରହ୍ମା ବୋଲନ୍ତି ମୁନି ଶୁଣ । ପୁରୁଷୋତ୍ତମର ସମାନ ॥
ସମୁଦ୍ର ସମାନଟି ତୀର୍ଥ । ଦର୍ଶନେ ମଧ୍ୟେ ଜଗନ୍ନାଥ ॥
ଚତୁର୍ଦ୍ଦଶ ଭୁବନେ ନାହିଁ । ଦୁର୍ଲ୍ଲଭ ଦ୍ଵିଜପୁରେ ଏହି ॥
ଏତନ କର୍ମ ଯେ କରଇ । ବୈଷ୍ଣବ ମଧ୍ୟେ ସାର ସେହି ॥
କୃଷ୍ଣ ବୋଲନ୍ତି ଋଷି ସୁହି । ସକଳ ଦେବେ ଶ୍ରେଷ୍ଠ ମୁହିଁ ॥
ସକଳ ତୀର୍ଥରେ ସାଗର । କ୍ଷେତ୍ରେ ପୁରୁଷୋତ୍ତମ ବର ॥
ବାଟେ ଶ୍ମଶାନେ ଶବ ପଡ଼ର । ମଣ୍ଡପବୃକ୍ଷ ଜଳତଳେ ॥
ଜଳ ଅନଳ ଶୂନ୍ୟମଣ୍ଡ । ଯେ କ୍ଷେତ୍ରେ ଦେହକୁ ଛାଡ଼ଇ ॥
ମୋହର ପ୍ରାପ୍ତେ ରୂପ ହୋଇ । ମୋର ସେବାରେ ନିତ୍ୟେରହି ॥
ବ୍ରହ୍ମା କହନ୍ତି ମୁନି ସୁହି । ଚତୁର ମାସ ମଧ୍ୟେ ଯାଇ ॥
ବ୍ରହ୍ମାଣ୍ଡେ ଯେତେ କ୍ଷେତ୍ର ଛନ୍ତି । ପ୍ରକଣ୍ଠା ସ୍ଥାନ ଯେବା ପୃଥ୍ୱୀ ॥
ଆସି କରନ୍ତି କ୍ଷେତ୍ରେ ବାସ । ପୁରୁଷୋତ୍ତମେ ଚାରିମାସ ॥
ସ୍ନାନ ମଣ୍ଡପ ତୋଟାଙ୍କରେ । ଥାନ୍ତି ଯେ ଦର୍ଶନ ଆଶାରେ ॥
ବ୍ରହ୍ମାଣ୍ଡ ମଧ୍ୟେ ତୀର୍ଥ ଯେତେ । ପୁଷ୍କର ଗଙ୍ଗାଦି ସହିତେ ॥
ଚାତୁର୍ମାସ୍ୟେ କ୍ଷେତ୍ରେ ଅସନ୍ତି । କୂପ ଗାଡ଼ିଆ ବାମ୍ପି ଥାନ୍ତି ॥
ଏ ଯେ ସଂସାରେ ଶ୍ରେଷ୍ଠ ହୋଇ । ତୀର୍ଥ ନାମ ଛନ୍ତି ବୋଲାଇ ॥
ପାପୀଏ ସ୍ନାହାନ କରନ୍ତି । ପାପଛାଡ଼ ପୁଣ୍ୟ ଲଭନ୍ତି ॥
ଏ ପାପ ଛଡ଼ାଇବା ଅର୍ଥେ । ପୁରୁଷୋତ୍ତମ ସର୍ବତୀର୍ଥେ ॥
ଚାତୁର୍ମାସ୍ୟ ଏଥିରେ ଥାନ୍ତି । ପାପ ଛଡ଼ାଇ ସ୍ଥାନେ ଯାନ୍ତି ॥
ପୁରୁଷୋତ୍ତମକୁ ନ ଯାଇ । ସିଦ୍ଧି ଲଭିବ ପ୍ରାଣୀ କାହିଁ ॥
ଯେତେ ଦେବତା ଦେଖ ପୃଥ୍ୱୀ । ଚାତୁର୍ମାସ୍ୟ କ୍ଷେତ୍ରେ କରନ୍ତି ॥
ପୁରୁଷୋତ୍ତମର ସମାନ । ନାହିଁ କ୍ଷେତ୍ର ତିନି ଭୁବନ ॥

( ସ୍କନ୍ଦପୁରାଣେ )

ବ୍ରହ୍ମାଙ୍କୁ କହନ୍ତି ମୁରାରି । ଦୁଷ୍ଟେ ଯେ ଛନ୍ତି ବସୁନ୍ଧରା ।
ଅନ୍ୟ କ୍ଷେତ୍ରକୁ ଠେଲୁଥାନ୍ତି । ପୁରୁଷୋତ୍ତମକୁ ନିନ୍ଦନ୍ତି ॥
ମୋତେ ନିନ୍ଦିଲା ଫଳ ପାଇ । ଯୁଗାନ୍ତ ଯାଏ ନ ତରଇ ॥
ତପ ସାଧିଣ ଅନ୍ୟକ୍ଷେତ୍ରେ । ପ୍ରାଣୀ ଲଭନ୍ତି ପୁଣ୍ୟ ଯେତେ ॥
ବିନା ସାଧେ ପୁରୁଷୋତ୍ତମ । ପ୍ରାଣୀଏ ଲଭନ୍ତ ଉତ୍ତମ ॥
ଦିନେ ମାତ୍ର କ୍ଷେତ୍ରରେ ରହି । ସର୍ବ ତପସ୍ୟା ଫଳ ପାଇ ॥

( ଲକ୍ଷ୍ମୀପୁରାଣେ )

ଲକ୍ଷ୍ମୀ ବୋଲନ୍ତି ବ୍ରହ୍ମା ଶୁଣ । ସ୍ୱର୍ଗଯିବନ୍ତି ଯେବଣ ଜନ ।
ଦଣ୍ଡେ କଳ୍ପବଟ ସ୍ଥଳରେ । ନିଷ୍କଳ୍ପ ହୋଇଣ ବସିଲେ ।
ଦେବେ ଦେଖନ୍ତି ଶୂନ୍ୟେ ଥାଇ । ଶଙ୍ଖଚକ୍ର ଅଙ୍ଗେ ଦିଶଇ ॥
ବିଷ୍ଣୁ ସ୍ୱରୂପ ହୋଇ ସେହି । ନିତ୍ୟରେ ନିତ୍ୟ ସେବା ପାଇ ॥

( କାଶୀମାହାତ୍ମ୍ୟେ )

ଅନେକ ତୀର୍ଥ ଆନ କ୍ଷେତ୍ରରେ । କୋଟି ବରଷ ସେବା କରେ ।
ସେତିକି ଫଳ ପ୍ରାପତ ନୋହି । ପୁରୁଷୋତ୍ତମ ଯେବେ ଯାଇ ।
କାର୍ତ୍ତିକରେ ଦିନେ ରହଇ । କୋଟିକ ଫଳ ସେହି ପାଇ ॥
ସେହି ପ୍ରମାଣ ମହେଶ୍ୱର । କହିଲେ ପାର୍ବତୀ ଅଗର ॥
ଯାଗ ଯୋଗ ଯେ ଦାନବ୍ରତ । ଧନକେ ଲଭଇ କାର୍ତ୍ତିକ ॥
ସ୍ତ୍ରୀ ଶୂଦ୍ର ଆନ ଯେ ଭଜନ୍ତି । କୋଟି ସାଧନେ ନ ତରନ୍ତି ॥
ତାହାଙ୍କୁ ବିଷ୍ଣୁ ମାୟା ମୋହି । ସଂସାରୁ ତରିବେ ସେ କାହିଁ ॥
ଥାଉ ତା ରହିବା ଭରତ । ଯାହିଁ ଅଛନ୍ତି ଯେ ଭୂରତ ॥
କେବଳ ସଂସାରୁ ତରିଲା । ଯମ ସମୁଦ୍ର ନ ଦେଖିଲା ॥
ଥାଉ ତା ଯିବା କଥାମାନ । ଭୁଣ୍ଡେ ବୋଲେ ପୁରୁଷୋତ୍ତମ ॥
ଭକ୍ତି ଯେ ରକ୍ଷତି ଅଙ୍ଗ । ନାନ କ୍ଷୁଦ୍ରରେ ହୋଏ ସ୍ୱର୍ଗ ॥
ଥାଉ ତା ବୋଲିବାର ବାଣୀ । ପର ନିନ୍ଦନ୍ତି ଯେବେ ଶୁଣି ॥

ଯେ ଅବା ମନରେ କଲ୍ପଇ । ବସ୍ତୁ ମାୟାରୁ ତରିଯାଇ ॥
ଯେବଣ କ୍ଷେତ୍ରେ କାଳ କଲେ । ବେଦ ପଢ଼ିବା ଫଳ ମିଳେ ॥
ସ୍ତ୍ରୀଙ୍କି ହାସ୍ୟ ଯେ କରଇ । ସ୍ତୁତି କଲାର ଫଳ ପାଇ ॥
ଶାକ ଅମ୍ବିଳକୁ ଭୋଜନ । ଲଭେ ହବିଷ୍ୟ ଫଳମାନ ॥
ବନ୍ଧୁଙ୍କୁ ଭୋଜନ ବସାଇ । ବିପ୍ର ଭୋଜନ ଫଳ ପାଇ ॥
ଗ୍ରାମ ଲୋକଙ୍କୁ ଦେଖେ ଯେବେ । ବୈଷ୍ଣବ ଦରଶନ ଲଭେ ॥

( ଭବିଷ୍ୟ ପୁରାଣେ । )

ବ୍ରହ୍ମା ବୋଲନ୍ତି ଋଷି ଶୁଣ । ପୁରୁଷୋତ୍ତମ ଯେତେ ଗୁଣ ॥
ପୁରୁଷୋତ୍ତମ ଯାନ୍ତି ନର । ଗୃହରୁ ହୁଅନ୍ତି ବାହାର ॥
ଶତ ପଦହସ୍ତ ଯେବେ ଯାଇ । ତା ପଦେ ପଦେଁ ଯେତେ ପାପଥାଇ ॥
ଅଗ୍ନିରେ ତୃଣରାଶି ହୋଇ । ଯେସନ ଭାବରେ ଭସ୍ମ ଯାଇ ॥
ପଦହସ୍ତେ ପଦହସ୍ତକେ ସେହି । ଯାଗ କଲାର ଫଳ ପାଇ ॥
ସପତ ଦୀପଦାନ ଫଳ । ସେ ପ୍ରାଣୀ ପାଏ ତତକାଳ ॥
ସକଳ ତୀର୍ଥେ କଲା ସ୍ନାନ । କ୍ଷେତ୍ରକୁ କରେ ଯେ ଗମନ ॥
ସକଳ ଯାଗ ସେହି କଲା । ସକଳ ଯୋଗ ସେ ସାଧିଲା ॥
ପୁରୁଷୋତ୍ତମ ଯେହୁ ଯାଇ । ଏକେକ କୁଳ ସେ ତାରଇ ॥
ଆପଣା କୁଳ ମାତୃ କୁଳ । ମାଉସୀ ପିଉସୀର କୁଳ ॥
ମିତ୍ର ଭଉଣୀ ଯେତେ ଥାଇ । ଏମନ୍ତେ ସାତକୁଳ ସେହି ॥
ଏତେକ ଲୋକ ଉଦ୍ଧରଇ । ଯେବେ ନିତ୍ୟ ସେବାରେ ଥାଇ ॥
ବୋଇଲେ ବିପ୍ର ଦିବାକର । ସେହି ପ୍ରଭୁଙ୍କ ଆଜ୍ଞା ମୋର ॥

ଇତି ଶ୍ରୀ ଜଗନ୍ନାଥାମୃତେ ଶ୍ରୀ ଅତିବଡ଼ ଜଗନ୍ନାଥ ଦାସ ଗୋସାଇଁ
ଅନୁକ୍ରମଣି ନାମ ଦ୍ୱାଦଶୋଽଧ୍ୟାୟଃ ।



# ତ୍ରୟୋବିଂଶ ଅଧ୍ୟାୟ ।

ବୋଲଇ ବିପ୍ର ଦିବାକର । ସୁଜନେ ଶୁଣ ରସଭର ॥
ଶ୍ରୀ ଅତବନ୍ଦ ଯେ ଗୋସାଇଁ । ଶିଷ୍ୟଙ୍କୁ ଏହା ପୁଣ କହି ॥
ଚୈତନ୍ୟ ମହାପ୍ରଭୁ ଥିଲେ । ଏ ସୁଖ ସେହୁ ଅଦରିଲେ ॥
ପରମ ଅନନ୍ତ ମୂରତି । ଦାରୁରୂପରେ ସହଁ ସ୍ଥିତି ॥
ଶ୍ରୀବଳ ଦେବ ସୁଭଦ୍ରାରେ । ଜଗନ୍ନାଥ ସୁଦର୍ଶନରେ ॥
ଚତୁର୍ଦ୍ଧା ମୂରତି ଦର୍ଶନ । ଯେ କରେ ଧନ୍ୟ ତା ଜୀବନ ॥
ଦର୍ଶନେ ପତିତପାବନ । ଅବର ବନତା ନନ୍ଦନ ॥
କମଳାକ୍ଷୀ ଯେ ବିପ୍ରସ୍ୱ ସେ । ନିତ୍ୟେ ଲଳିତା ନାମ ଭଷେ ॥
ତାହାଙ୍କୁ ସେବା ଯେବେ କର । ନିତ୍ୟ ସେବାରେ ଶିକ୍ଷି ପାର ॥

( ଦକ୍ଷ ପ୍ରସଙ୍ଗେ । )

ବ୍ରହ୍ମା ଋଷିଙ୍କି ଛନ୍ତ କହି । ପ୍ରଭୁଙ୍କ ସ୍ନାନ ଯାତ୍ରାଠାଇ ॥
ଜୟ ଶ୍ୟାମ କୃଷ୍ଣ ବୋଲିଣ । ଯେ ସ୍ତୁତି କରଇ ମୁଖେଣ ॥
ସେ ବ୍ରହ୍ମ ଲୋକରେ ବସଇ । କେବହୁଁ ଦୁଃଖ ନ ଦେଖଇ ॥
ଯେ ଚନ୍ଦ ମୂରତିଙ୍କ ସ୍ନାନ । ସୁଖେ କରଇ ଦରଶନ ॥
ସେ ଏକୋଇଶ କୁଳ ଘେନି । ସୁଖେ ବସଇ ନିତ୍ୟ ଭୂମି ॥
ଚତୁର୍ଦ୍ଧା ମୂର୍ତ୍ତି ଦରଶନ । ଦାଇବେ ଯେବେ କରେ ଜନ ॥
ସେ ପ୍ରାଣୀ ଷାଠିଏକ ପୁରୁଷ । ଘେନି ନିତ୍ୟରେ ଅଭିଳାଷ ॥
ସ୍ନାନ ସାରଣ ଭଗବାନ । ଦକ୍ଷିଣ ମୂରତି ଗମନ ॥
ଯେବଣ ପ୍ରାଣୀ ତା ଦେଖନ୍ତି । ସାଯୁଜ୍ୟ ମୁକତି ଲଭନ୍ତି ॥
ସପତ ପୃଥ୍ୱୀ ଚଉଥର । ପ୍ରଦକ୍ଷିଣ କରେ ଯେ ନର ॥
ଦକ୍ଷିଣ ମୂର୍ତ୍ତି ଯେ ଦେଖଇ । ସେତେକ ଫଳ ସେ ଲଭଇ ॥
ବଦରୀ କ୍ଷେତ୍ର ଦରଶନ । ଗଙ୍ଗା ସାଗରେ ଯେ ସ୍ନାସନ ॥
ଚନ୍ଦ୍ର ସୂର୍ଯ୍ୟ ଗ୍ରହଣ ମତେ । ଦାନ ଦିଅନ୍ତେ ପୁଣ୍ୟ ଯେତେ ॥

ତପସ୍ୟା ହୋମ ଜପ ଫଳ । ସେ ପ୍ରାଣୀ ପାନ୍ତି ତତକାଳ ॥
ସଖା ମଖା ଗୁଣ୍ଡିଚ୍ଚ ତଳ । ଦର୍ଶନ କରନ୍ତି ଯେ ପ୍ରାଣୀ ॥
ଥରେ ମାଧବ ଯେ ଦେଖନ୍ତି । ତାପତ୍ରୟରୁ ତରଯାନ୍ତି ॥
ପରମାନନ୍ଦ ସୁଖ ପାନ୍ତି । ନବଧା ଭକ୍ତି ସେ ଲଭନ୍ତି ॥
ସପତ ଦିନ ଯେଉଁ ନର । ସେବା କରେ ଗୁଣ୍ଡିଚ୍ଚ ଘର ॥
ସେମାନେ ନବଧା ଭକତ । ସେବା କରୁ କରୁ ଲଭନ୍ତି ॥
ଋଷିଙ୍କି କହୁଛନ୍ତି ବ୍ରହ୍ମା । ଗୁଣ୍ଡିଚ୍ଚ ଯାହାର ମହିମା ॥
ଅନ୍ୟେ ସେ ଗୁଣ ନ ଜାଣଇ । ପ୍ରବନ୍ଧେ କହିବା ତା କାହିଁ ॥
ଗୁଣ୍ଡିଚ୍ଚ ବୋଲି ଚନକ୍ଷର । ଯେ ପ୍ରାଣୀ କଣ୍ଠ ଉଚ୍ଚାର ॥
ତା ବଂଶେ ଯେତେ ପାପ ଥାଇ । ବାରେ ବୋଲନ୍ତେ ନାଶ ଯାଇ ॥
ଯେ ରଥାରୁଢ଼େ ଦରଶନ । ସେହି ବୈଷ୍ଣବ ମଧ୍ୟେ ଧନ୍ୟ ॥
ରଣ୍ଡପଛେ କ୍ଷଣେ ଗୋଡ଼ାଇ । ଏକାଶୀ ମତ ଭକ୍ତି ପାଇ ॥
ଯାଦେହେଁ ରଥ ଧୂଳି ଉଡ଼ି । ଗଣିତା ହୋଇ ଯେତେ ପଡ଼ି ॥
ତେତେକ ଯୁଗ ପରଯନ୍ତେ । ସେବା କରେ କୃଷ୍ଣ ସଙ୍ଗତେ ॥
ରଥ ସ୍ଥଳରେ ଯେ ଚମଇ । ନିଃଶ୍ୱାସ ଉଚ୍ଛ୍ୱାସକେ ସେହି ॥
ଅଶ୍ୱମେଧ ଫଳ ଲଭଇ । ତା ସ୍ତବ୍ୟ କେ ପାରିବ କହି ॥
ଯେବେ ତା ପିତୃ ସ୍ୱର୍ଗେ ଥାନ୍ତି । ତା ଦେଖି ନରକୁ ତରନ୍ତି ॥
ଯମଲୋକକୁ ପେଲି ଦେଇ । ବିଷ୍ଣୁ ଲୋକକୁ ଯାନ୍ତି ସେହି ॥

( ସ୍କନ୍ଦ ପୁରାଣେ । )

ଇନ୍ଦ୍ରଦ୍ୟୁମ୍ନେ ଭଗବାନ । ଏରୂପେ କହିଲେ ବଚନ ॥
ଚୌଷଷ୍ଠୀ କୋଟି ତୀର୍ଥମାନ । ପୁଷ୍କର ଅଛି ଇନ୍ଦ୍ରଦ୍ୟୁମ୍ନ ॥
ମୋର ଗୁଣ୍ଡିଚ୍ଚ ନବଦିନ । ଯେ ତହିଁ କରଇ ଦର୍ଶନ ॥
ଚୌଷଷ୍ଠି କୋଟି ତୀର୍ଥଜଳ । ସେ ପ୍ରାଣୀ ଲଭେ ତତକାଳ ॥
ଗୁଣ୍ଡିଚ୍ଚ ଘରେ ମୋତେ ଦେଖେ । ସକଳ ଦୁଃଖ ସେ ଉତ୍ପେଖେ ॥
ଦଶବେ ଯେତେ ଫଳ ହୋଇ । ସହେ ଦଶଗୁଣ ଲଭଇ ॥

ଅନନ ହୋଉ ଯେନ୍ତ ଯାଇ । ତାର ଭକତ ଜେବା ଜନ୍ମ ॥

( ପଦ୍ମପୁରାଣେ । )

[illegible] କରି ଯାକୁ କରେ । ଧରି ନଅନ୍ତି କ୍ଷେତ୍ରବରେ ॥
ତା ମନେ ମହାଦୁଃଖ ହୋଇ । ବନ୍ଧ ହୋଇଣ ଯାଇ ସେହି ॥
ଟେକ୍ଷେତ୍ରରେ ପ୍ରବେଶ ହୁଅନ୍ତେ । କୋଟି ପୁଣ୍ୟ ଲଭେ ଭୁବତେ ॥
ମନ ଜ୍ଞାନରେ ତା ନ ଥାଇ । ବଳେ ଦଅଇ ତାକୁ ମୁହିଁ ॥
ଲଦଣ ବଳଦ ପିଠିରେ । ଅଶ୍ୱ ହସ୍ତୀ ଓଟ ବା ଖରେ ॥
ପକ୍ଷୀ ପଞ୍ଜରେ ପ୍ରବେଶ । ଯେ ଭଲେ ମୋର କ୍ଷେତ୍ରେ ନେଇ
ଅଗ୍ନିହୋତ୍ରିଙ୍କର ଯେ ଗତି । ସେ ଫଳ ସେମାନେ ଲଭନ୍ତି ॥

( ନୃସିଂହ ପୁରାଣେ । )

ଯବେ ନୃସିଂହ ପ୍ରହଲ୍ଲାଦେ । କହିଲେ କ୍ଷେତ୍ରର ସମ୍ବାଦେ ॥
ଯେ ମୋ ପୁରୁଷୋତ୍ତମ ଯାନ୍ତି । ତୁମ୍ଭର ପରି ଭକ୍ତି ପାନ୍ତି ॥
କହିବା ପ୍ରମାଣ ନୁହଇ । ପ୍ରତ୍ୟକ୍ଷେ ଦେଖ ତୁମ୍ଭେ ଯାଇ ॥
ପ୍ରଥମେ ନବଧା ଭକ୍ତି ପାନ୍ତି । ଚଉଷଠି ଅଙ୍ଗ ଲଭନ୍ତି ॥
କାଳେ ଏକାକ୍ଷୀ ଭକ୍ତି ପାନ୍ତି । ପ୍ରତ୍ୟକ୍ଷେ ଦେଖି ଧୀରମତି ॥

(ବ୍ରହ୍ମବୈବର୍ତ୍ତେ ।)

ବେଦ ପୁରାଣ ନିନ୍ଦା କରେ । ବେଦ ଯେ ନିନ୍ଦନ୍ତି ସଂସାରେ ॥
ଧର୍ମ କରନ୍ତି ଅନଭିଜ୍ଞ । ନିନ୍ଦନ୍ତି ବିପ୍ର ବଇଷ୍ଣବ ॥
ଯତି ସତୀ ତପୀ ନିନ୍ଦନ୍ତି । ମୁହିଁ ବଡ଼ ବୋଲି ବୋଲନ୍ତି ॥
ସେ ଯେବେ କ୍ଷେତ୍ରେ ଗମେ ଯାନ୍ତି । ଦର୍ଶନେ ସେ ଦୋଷ ନାଶନ୍ତି

( ଶ୍ରୀ ଭାଗବତେ । )

ପ୍ରହଲ୍ଲାଦଙ୍କୁ ଭଗବାନ । ବୋଇଲେ ଭକ୍ତ ଶ୍ରେଷ୍ଠ ଶୁଣ ॥
ଲୀଳା କାରଣେ ମୋର ମୂର୍ତ୍ତି । ବ୍ରହ୍ମାଣ୍ଡେ ଯେତେକ ଅଛନ୍ତି ॥
ଶତେ ବରଷ ପର୍ଯ୍ୟନ୍ତେ । ତାଙ୍କୁ ଭଜନ୍ତି ପ୍ରାଣୀ ଯେତେ ॥

ତହିଁ ଯେତେକ ପୁଣ୍ୟହୋଇ । ଦଣ୍ଡକେ କ୍ଷେତ୍ରୋତ୍ତମେ ଯାଇ ॥
ଶୁଣ ସ୍ୱଜନେ ଦେଇ ଚିତ୍ତ । କହିଲି କ୍ଷେତ୍ରର ବୃତ୍ତାନ୍ତ ॥
ତୁମ୍ଭେ ବା ବୋଲିବ ଏମନ୍ତ । ରାଧାକୃଷ୍ଣ ଏକ ଭକତ ॥
ଚୈତନ୍ୟ ଅନ୍ୟ ନ ଦେଖନ୍ତ । ଅନ୍ୟହେ ଭାଷା ନ କହନ୍ତ ॥
ଅନ୍ୟରେ ନାହିଁ ଦୃଷ୍ଟି ମନ । ଏକ ଭାବରେ ବେନି ମଗ୍ନ ॥
ମାଧୁର୍ଯ୍ୟ ଭାବେ ଛନ୍ତି ବନ୍ଧି । ଐଶ୍ୱର୍ଯ୍ୟକୁ ବାଞ୍ଛା ନାହିଁ ॥
ଯେ ବାଞ୍ଛା ହୃଦରେ ଘେନନ୍ତ । ତାର ଐଶ୍ୱର୍ଯ୍ୟ ପଦ୍ଧତ ॥
ରାବଣ ମାରିବା ନିମନ୍ତେ । ଶ୍ରୀରାମ ବାଞ୍ଛା କଲେ ଚିତ୍ତେ ॥
ଗୋପକନ୍ୟା ରାସ ବିଧାନ । ବାଞ୍ଛା କଲେ ନନ୍ଦନନ୍ଦନ ॥
ନୃସିଂହ ବିଦାରି ହିରଣ୍ୟ । ବଳିକି ଛଳିଲେ ବାମନ ॥
କୂର୍ମ ଅମୃତ ମନ୍ଥିବାରେ । ପୃଥ୍ୱୀ ବରାହ ରୂପରେ ॥
ଏ ଆଦି ଯେତେ ଅବତାର । ସବୁରି କାମନା ବିସ୍ତର ॥
ଜଗନ୍ନାଥଙ୍କ ବାଞ୍ଛା ନାହିଁ । ରାଧାଙ୍କ ଭାବେ ସୁଖେ ରହି ॥
ଏଣୁ ମଧୁର ଆସ୍ୱାଦନ । କୋଟି ଯୁଗେ ରସ ସାଧନ ॥
କାହେଁ ବା ବୋଲିବ ଏମନ୍ତ । ଏତେ ସଂସାର କାହିଁ ଜାତ ॥
ଏଥେ କେ ଅସୁର ମାରଇ । ପ୍ରଳୟ କାଳେ କେ ନାଶଇ ॥
ଭକ୍ତଙ୍କ ଦୁଃଖ କେ ଶୁଣଇ । ତହିଁକୁ ସେନ କରେ ଥାଇଁ ॥
କେ କରେ ଅଶେଷ ସଂସାର । ଏ ଭେଦ ମଗ୍ନ ନିରନ୍ତର ॥
ଏଥି ସଂଶୟ ଭଗ୍ନମାନ । କହିବା ଶୁଣ ସାଧୁଜନ ॥
କମଠ ବରାହ ଯେ ମୀନ । ନୃସିଂହ ହୟଗ୍ରୀବ ଜାଣ ॥
କପିଳ ବ୍ୟାସ ଆଦି ଯେତ । ଅବତାର ଯେ ପ୍ରଭୁ ପୁଣି ॥
ପୃଥ୍ୱୀର ଭାର ହରାସନ୍ତ । ଲେଉଟି ଏଠାରେ ମିଶନ୍ତି ॥
ସର୍ବ ଉପରେ ଏହି ସ୍ଥିତି । ନିରାକାର ବସ୍ତୁ ବୋଲନ୍ତି ॥
ଏହାକୁ ବୋଲି ଭଗବାନ । ଭବରେ ନାହିଁ ଟି ଜନମ ॥
ଚଉଦ ପୁରେ ଅଟେ ମସ୍ତ । ଚଉଦ ବୈକୁଣ୍ଠ ଅଛଇ ॥

ସେ ହୃଷ୍ଟ ସର୍ବ ଅଧିକାରୀ । ଲକ୍ଷ୍ମୀଙ୍କି ଦେଲ ଲୀଳାକରି ॥
ଲକ୍ଷ୍ମୀ ନାରାୟଣ ଯେ କହ । ଲକ୍ଷ୍ମୀ ନୃସିଂହ ନାମ ବହ ॥
ହଂସ ଦିବାକର କହଇ । ଗଳକଣ୍ଠରେ ମନ ଥୋଇ ॥

ଇତି ଶ୍ରୀ ଜଗନ୍ନାଥାମୃତେ ଶ୍ରୀ ଅତି ବଡ଼ ଜଗନ୍ନାଥଦାସ ଗୋସାଇଁ ଅନୁକର୍ମଣି ନାମ ଷଡ୍ବିଂଶୋଽଧ୍ୟାୟଃ ।




କଟକ ଅରୁଣୋଦୟ ପ୍ରେସରେ ଶ୍ରୀ ନିତ୍ୟାନନ୍ଦ ସାହୁଙ୍କଦ୍ୱାରା ମୁଦ୍ରିତ ।